ବଣଜଙ୍ଗଲର ଜୀବଜନ୍ତୁ—ଏକ

# ସିଂହ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

ପ୍ରକାଶକ

ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ—୨

ଚତୁର୍ଥ ପ୍ରକାଶ

୧୯୭୫

ମୁଦ୍ରାକର

ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରସାଦ ପ୍ରେସ,

କଟକ—୨

ମୂଲ୍ୟ—ଦୃଣ ପଇସା ମାତ୍ର




—୧—

ସିଂହକୁ 'ପଶୁରାଜ' କୁହାଯାଏ ।

ସିଂହଠାରୁ ଢେର୍ ବଡ଼ ଜନ୍ତୁ ବହୁତ ଅଛନ୍ତି । ତାଠାରୁ ବେଶି ବଳୁଆ ଜୀବ ବି ବଣରେ ରହୁଛନ୍ତି । ତଥାପି ସିଂହ ସେମାନଙ୍କର ରାଜା ହେଲା କାହିଁକି ?

ସିଂହର ଚେହେରା ରାଜାମାନଙ୍କ ଚେହେରା ପରି ଗମ୍ଭୀର । ଯେତେ ବଡ଼ ବଳୁଆ ଜୀବ ହେଉ ପଛକେ, ସିଂହ ଗର୍ଜନ ଶୁଣିଲେ

ସେ ନଷ୍ଟପ୍ରୁ ସ୍ଥନଆ ହୋଇପଡ଼ିବ । ସିଂହ ଆଖିରେ ଏପରି ତେଜ ଅଛି, ତାକୁ ଯେ ଚାହିଁଦେବ, ସେ ଯେତେ ସାହସୀ ହେଉ ନା କାହିଁକି, ତା ଛାତି ପାଣି ହୋଇଯିବ । ବୋଧହୁଏ ଏଇଥିପାଇଁ ସିଂହ ସବୁ ଜନ୍ତୁଙ୍କର ରଜା ବୋଲି ଉପାଧି ପାଇଛି ।

ଆଗେ ପୃଥିବୀର ବହୁତ ଆଡ଼େ ସିଂହ ଥିଲେ । କ୍ରମେକ୍ରମେ ସେମାନଙ୍କ ବଂଶ ବୁଡ଼ି ଆସିଲାଣି । ଏବେ କେବଳ ଆଫ୍ରିକା ଦେଶର ଜଙ୍ଗଲରେ ଏବଂ ଆମ ଭାରତବର୍ଷର କାଠିଆବାଡ଼ ଅଞ୍ଚଳର ବଣରେ ସିଂହ ଦେଖାଯାଆନ୍ତି ।

ପଣ୍ଡିତମାନେ କହନ୍ତି, ଆଗେ ଆମ ଦେଶର ପ୍ରାୟ ସବୁଆଡ଼ ଜଙ୍ଗଲରେ ସିଂହ ଥିଲେ । ଲୋକେ ଶିକାର କରି ସେମାନଙ୍କୁ ମାରି ପକାଇଲେ । ତେଣୁ ଅନେକଆଡ଼ୁ ସିଂହ ଆସ୍ତେଆସ୍ତେ ଲୋପ ପାଇଆସିଲେ ।

ରାଜପୁତନାରେ ଜୁନାଗଡ଼ ବୋଲି ଗୋଟିଏ ଅଞ୍ଚଳ ଅଛି । ସେହି ଅଞ୍ଚଳରେ ଗିର ଜଙ୍ଗଲରେ ଆଜିକାଲି ସିଂହ ଦେଖାଯାଆନ୍ତି । ୧୯୧୩ ମସିହାରେ ଜୁନାଗଡ଼ର ରଜା ନାନା ଉପାୟରେ ବଣରେ ଥିବା ସିଂହମାନଙ୍କର ହିସାବ କରାଇଥିଲେ । ଜଣାଗଲା ଯେ, କେବଳ ଆଠଗୋଟି ସିଂହ ସେଠାରେ ଅଛନ୍ତି । ସେ ଆଠଟିକୁ ମାରିଦେଲେ, ଆମ ଦେଶରୁ ଏକାବେଳକେ ସିଂହବଂଶ ଲୋପ ପାଇଯିବ । ତେଣୁ ସେ ଆଇନ କରି ସିଂହ ଶିକାର ବନ୍ଦ କରିଦେଲେ ।

ତେଇଶ ବର୍ଷ ପରେ ପୁଣି ସିଂହ ଗଣାଗଣିର ବ୍ୟବସ୍ଥା ହେଲା । ସେତେବେଳେ ଜଣାଗଲା, ସେ ବଣରେ ତିନଶହ ପର୍ଯ୍ୟନ୍ତ ସିଂହ ହେଲେଣି ।

ଆଫ୍ରିକା ଜଙ୍ଗଲରେ ବହୁତ ସିଂହ ଅଛନ୍ତି । ଲୋକେ ସେଠାରୁ କଳକୌଶଳରେ ସିଂହ ଧରି ସର୍କସବାଲାଙ୍କୁ ବିକନ୍ତି; ନାନା ଦେଶର ଚିଡ଼ିଆଖାନାକୁ ପଠାନ୍ତି ।

ସେଠାରେ ଜଣେ ଲୋକ ତ କେବଳ ସିଂହ ବ୍ୟବସାୟ ଚଳାଇଛନ୍ତି । ବଣ ଜଙ୍ଗଲର ଚାରିପଟେ ଖୁବ୍ ଉଚ୍ଚରେ ଲୁହାର ଜାଲବାଡ଼ ଘେରା ଯାଇଛି; ତା ଭିତରେ କେତେକ ସିଂହ ଥାଆନ୍ତି । ସେମାନଙ୍କୁ ପ୍ରତିଦିନ ଖାଇବାକୁ ଦିଆଯାଏ । ପାଣି ପିଇବା ପାଇଁ ବଣଭିତରେ ପୋଖରୀ ଖୋଳାଯାଇଛି । ସିଂହସବୁ ସେଠାରେ ମନଖୁସିରେ ଚଳନ୍ତି । ସେମାନଙ୍କର ଛୁଆ ହେଲେ ବେପାରୀ ତାହା ସର୍କସବାଲାଙ୍କୁ ବିକିଦିଅନ୍ତି । ଗୋଟିଏ ଗୋଟିଏ ସିଂହ ଛୁଆର ଦାମ ଦଶହଜାରରୁ ପନ୍ଦରହଜାର ଟଙ୍କା ଯାଏ ହୁଏ ।

ସାଧାରଣତଃ ସିଂହ ତିରିଶ ବର୍ଷରୁ ଚାଳିଶ ବର୍ଷ ପର୍ଯ୍ୟନ୍ତ ବଞ୍ଚେ । ଗୋଡ଼ ପାଦଠାରୁ ପିଠି ପର୍ଯ୍ୟନ୍ତ ସିଂହ ଅଢ଼େଇ ହାତ ଯାଏ ଉଚ୍ଚ ହୁଏ । ମୁହଁର ନାକଠାରୁ ଲାଞ୍ଜ ଶେଷ ଯାଏ ସାତ ହାତ ଲମ୍ବ ହୋଇଥାଏ । ଅଣ୍ଡିରା ସିଂହ ବେକର ଚାରିପାଖେ ବହୁତଗୁଡ଼ାଏ ଲମ୍ବା ବାଳ ଥାଏ । ଏହାକୁ "କେଶର" କହନ୍ତି । ମାଈ ସିଂହ ବେକରେ କେଶର ନ ଥାଏ । ସିଂହ ରାଗିଗଲେ ଏହି କେଶରସବୁ ଫୁଲିଉଠେ; ସେତେବେଳେ ସେ ଖୁବ୍ ଭୟଙ୍କର ଦେଖାଯାଏ ।

ସିଂହସବୁ ନିବିଡ଼ ଜଙ୍ଗଲରେ ଏବଂ ପାହାଡ଼ ଗୁମ୍ଫାମାନଙ୍କରେ ରହନ୍ତି । ଦିନଯାକ ସେମାନେ ଶୋଇଥାନ୍ତି; ରାତି ହେଲେ ଶୀକାର ଖୋଜି ବାହାରନ୍ତି । ସାଧାରଣତଃ ଦୁଇଟି ଲେଖାଏଁ ସିଂହ ସାଙ୍ଗ ହୋଇ ବୁଲନ୍ତି । କେବେକେବେ ଛଅଟି ସିଂହ ଏକାଠି ବୁଲୁଥିବାର ଦେଖାଯାଏ । ଗୋଟିଏ

ରାଜା, ଆଉ ଦୁଇଟି ରାଣୀ । ଆଫ୍ରିକା ଜଙ୍ଗଲରେ ସମସ୍ତ ସମୟରେ ଦଳ ବାନ୍ଧି ବହୁତଗୁଡ଼ିଏ ସିଂହ ଏକସଙ୍ଗ ବୁଲୁଥିବାର ଦେଖାଯାଇଛି ।

ରାଣୀ ସିଂହ ଥରକେ ଦୁଇ ତିନୋଟି ଛୁଆ ଜନ୍ମ କରେ । ଆମେ ଦେଖିଛେ, ବିଲେଇଛୁଆ ଜନ୍ମ ହେଲାବେଳେ ତାର ଆଖି ଫିଟି ନ ଥାଏ । ସିଂହଛୁଆ ସେହିପରି ଜନ୍ମ'ବେଳେ ଅନ୍ଧ ଥାଏ; କିଛି ଦିନ ଗଲେ ତା ଆଖି ଫିଟେ । ମା ସିଂହ ତାକୁ ସବୁବେଳେ ପାଖରେ ରଖି ଜଗିଥାଏ । ବାପ ବଣଭିତରୁ ଜୀବଜନ୍ତୁ ମାରି ଆଣି ସେମାନଙ୍କୁ ଖାଇବାକୁ ଦିଏ । ଛୁଆ ବଡ଼ ହୋଇଗଲେ ମା ବାପଙ୍କଠାରୁ ଅଲଗା ହୋଇଯାଆନ୍ତି ।



ସିଂହ ହିଂସ୍ରଜନ୍ତୁ—ମଣିଷ, ପଶୁ ପ୍ରଭୃତି ମାରି ଖାଏ । ତଥାପି ତା ହୃଦୟରେ ଦୟା ଅଛି ।

ଆମର ଭାଗବତରେ ଅଛି—

"ଦଣ୍ଡିବା ଶକ୍ତି ଯାର ଥାଇ,
ସେ ପୁଣି କ୍ଷମା ଆଚରଇ ।"

ସିଂହ କାହା ଉପରେ ଖୁସି ହୋଇଗଲେ ବା କୌଣସି ଡରକୁଳା ଜନ୍ତୁକୁ ଦେଖିଲେ, ତାକୁ ମାରେ ନାହିଁ ।

ଗୋଟିଏ ସର୍କସଦଳରେ ବଡ଼ ସିଂହଟାଏ ପିଞ୍ଜରାରେ ଥିଲା । ପ୍ରତି ଦିନ ଗୋଟାଏ ଲେଖାଏଁ ଷଣ୍ଢ ତାକୁ ଖାଇବାକୁ ଦିଆଯାଏ । ଦିନେ ସେ ପିଞ୍ଜରାପାଖରେ ଗୋଟିଏ ମେଣ୍ଢୀ କୁକୁର ବୁଲୁଥିଲା । ସର୍କସର ଲୋକେ ସେ କୁକୁରଟାକୁ

ଧରିଆଣି ପିଞ୍ଜରାଭିତରେ ପୂରାଇଦେଲେ । ସିଂହ ଗୋଟାଏ ଜୀଅନ୍ତା କୁକୁରକୁ କିପରି ମାରିବ, ସେଇ କଉତୁକ ଦେଖିବାକୁ ଠିଆହୋଇ ରହିଲେ ।

ସିଂହ ପିଞ୍ଜରାଭିତରେ ଶୋଇଥିଲା । ପାଖରେ କୁକୁରକୁ ଦେଖି ଧଡ଼ପଡ଼ ହୋଇ ଉଠି ଠିଆ ହେଲା । କେଶରପାକ ଝାଡ଼ି ଫୁଲାଇଦେଲା । ଆଖି ଦୁଇଟା ସତେ ଯେପରି ଜଳୁଛି ।

ଏହା ଦେଖି କୁକୁରର ପିଳେଇ ପାଣି ହୋଇଗଲା । ଆଗରେ ସାକ୍ଷାତ ଯମ ! ସେ ଆଉ ସିଂହଆଡ଼କୁ ଚାହିଁପାରିଲା ନାହିଁ, ଭୟରେ ଗୋଟାସୁଦ୍ଧା ଥରିବାକୁ ଲାଗିଲା । ଲାଙ୍ଗୁଡ଼ଟି ପଛ ଦୁଇ ଗୋଡ଼ ସନ୍ଧିରେ ଯାକିଦେଇଥାଏ । ପାଟିରୁ ଶବ୍ଦ ବାହାରୁ ନ ଥାଏ । ଅତି ବିକଳରେ ବୋବାଉଥାଏ—କେଁ ଏଁ ।

ସିଂହ କୁକୁରର ଏ ଅବସ୍ଥା ଦେଖିଲା । ତା ମନରେ ଦୟା ହେଲା । ସେ ଥରେ କୁକୁର ମୁହଁରେ ମୁହଁ ଲଗାଇ ଶୁଙ୍ଘିଦେଲା । ତା ପରେ ଯାଇ ନିଜ ଶୋଇବା ସ୍ଥାନରେ ଶୋଇପଡ଼ିଲା ।

କେତେକ ସମୟ ଗଲା; ସିଂହ କିଛି ନ କରିବାରୁ କୁକୁରର ସାହସ ବଢ଼ିଲା । ସେ ମନରେ ଟିକିଏ ଦମ୍ଭ ଧରିଲା; ସିଂହ ମୁହଁକୁ ଚାହିଁଲା । ସିଂହ ତାକୁ ଥରେ ଚାହିଁ ପୁଣି ସ୍ଥିର୍ କରି ଆଖି ବୁଜିଦେଲା ।

ସେହି ଦିନୁ ସେ ପିଞ୍ଜରାରେ ସିଂହ ଓ କୁକୁର ସାଙ୍ଗ ହୋଇ ରହିଲେ । ସିଂହକୁ ଯାହା ଖାଇବାକୁ ଦିଆଯାଏ, କୁକୁର ସେଥିରୁ ଭାଗ ପାଏ । ସିଂହ କୁକୁରକୁ ଚାଟେ; କୁକୁର ବି ସିଂହକୁ ଚାଟେ । ସେ ଶୋଇଥିଲା ବେଳେ ତା ଉପରେ ଚଢ଼ି କୁଦା ହୁଏ । ଦୁହେଁଯାକ ମନକୁ ମନ କେତେ ଖେଳନ୍ତି ।

ଦିନେ କି ଦୁଇ ଦିନ ନୁହେଁ, ତିନ ବର୍ଷଯାଏ ସେମାନେ ଏହିପରି ଏକାଠି ଥିଲେ । କୁକୁରଟା କ୍ରମେ ରୋଗିଣା ହୋଇଗଲା, କିଛି ଖାଇଲା ନାହିଁ—କେବଳ ଗୋଟିଏ ସ୍ଥାନରେ ପଡ଼ିରହିଲା । ସିଂହ ସବୁବେଳେ ତାକୁ ଚାହୁଁଥାଏ, ତା ପାଖରେ ଜଗି ରହିଥାଏ ।

କୁକୁରଟି ଦିନେ ମରିଗଲା । ଲୋକେ ପିଞ୍ଜରାରୁ ତାକୁ ବାହାର କରି ନେଇ ଫୋପାଡ଼ି ଦେଲେ । କୁକୁରକୁ ନ ଦେଖି ସିଂହ ଅଥୟ ହେଲା, କିଛି ଖାଇଲା ନାହିଁ । ଯେତେ ଯାହା ଉପାୟ ହେଲା, କୌଣସିଥିରେ ତା ମନ ବଦଳିଲା ନାହିଁ ।

ଲୋକେ ଆଉ ଗୋଟାଏ କୁକୁର ପିଞ୍ଜରା ମଧ୍ୟରେ ପୂରାଇ ଦେଲେ । ସିଂହ ରାଗରେ ତାକୁ କାମୁଡ଼ି ଟିକିଟିକି କରି ପକାଇଲା ।

କୁକୁରକୁ ଝୁରି ଝୁରି ଶେଷରେ ସିଂହଟି ମରିଗଲା ।

— ୩ —

ଆଗେ ଲୋକମାନେ କିଣାବିକା ହେଉଥିଲେ । ଯାହାର ବେଶି ପଇସା ଥାଏ, ସେ ବଜାରରୁ ଚାକର ଚାକରାଣୀ କିଣି ଆଣେ । ସେମାନଙ୍କୁ ଘରେ ରଖି ନିଜ କାମ କରାଏ । ସେମାନଙ୍କୁ ମାଡ଼ ଦିଏ, ତାଙ୍କ ଉପରେ ଅତ୍ୟାଚାର କରେ । ଯେତେ କଷ୍ଟ ହେଲେ ବି ସେ ଚାକର ଚାକରାଣୀ ତା ଘରୁ ପଳାଇ ଯାଇପାରିବେ ନାହିଁ । ପଳାଇଗଲେ ତାଙ୍କୁ ଧରିଆଣି ଜୀବନରେ ମାରିପକାଇବା ନିୟମ ଥିଲା ।

ଜଣେ ଲୋକ ଗୋଟିଏ ଚାକର କିଣି ଆଣିଥିଲା । ତା ନାମ ଆଣ୍ଡ୍ରୋକ୍ଲସ୍ । ସେ ଖାଉନ୍ଦର ସବୁ କାମ କରେ; ତଥାପି ଖାଉନ୍ଦ

ତାକୁ ଭଲକରି ମୁଠାଏ ଖାଇବାକୁ ଦିଏ ନାହିଁ,ଯେତେବେଳେ ଇଚ୍ଛା ସେତେବେଳେ ମାଡ଼ ଲଗାଏ ।

ଏ ଅତ୍ୟାଚାର କ୍ରମେ ଖୁବ୍ ବଢ଼ିଲା । ଆଣ୍ଡ୍ରୋକ୍ଲସ୍ ଆଉ ସହିପାରିଲା ନାହିଁ । ଦିନେ ରାତିରେ ଲୁଚି ଘରୁ ପଳାଇଗଲା ।

ସେ ଜାଣେ, ଧରାପଡ଼ିଲେ ନିଶ୍ଚୟ ମରିବ । ତେଣୁ ଯେପରି ଧରା ନ ପଡ଼ିବ, ସେଇଥିଲାଗି ନିବିଡ଼ ବଣଭିତରକୁ ଚାଲିଗଲା ।

ବଣଭିତରେ ଶ୍ରୀରୁଜୁପାସରେ କେତେ ଦିନ ବୁଲିଲା । ବୁଲୁ ବୁଲୁ ଗୋଟାଏ ପାହାଡ଼ ଗୁମ୍ଫା ଦେଖିଲା, ତାହାରି ଭିତରେ ଲୁଚି ରହିବ ବୋଲି ଗାଡ଼ ଭିତରକୁ ପଶିଗଲା । ମାତ୍ର ଭିତରେ ଯାହା ଦେଖିଲା, ସେଥିରେ ତାଁ ଆଖି ଖୋସି ହୋଇପଡ଼ିଲା ।

ଗୋଟାଏ ବଡ଼ ସିଂହ ସେଠାରେ ଶୋଇଛି । ସିଂହ ମୁହଁ ଟେକି ମଣିଷକୁ ଚାହିଁଲା; ମାତ୍ର ଉଠି ଆସିଲା ନାହିଁ କି କିଛି ରାଗ ଦେଖାଇଲା ନାହିଁ ।

ଆଣ୍ଡ୍ରୋକ୍ଲସ୍‌ର ଗୋଡ଼ ପଛକୁ ପଡ଼ିଲା ନାହିଁ କି ଆଗକୁ ଗଲା ନାହିଁ ।

ସେ ସେଠାରେ କିଛି ସମୟ ଠିଆ ହୋଇ ଦେଖିଲା, ସିଂହ ଆର ଗୋଡ଼ଟାଏ ପଦାକୁ ଲମ୍ବାଇ ଶୋଇଛି, ସେଇଟା ଫୁଲି ଯାଇଛି । କଷ୍ଟ ହେଉଛି କି କଣ, ସିଂହ ବେଳେବେଳେ ମୁହଁ ବିକୃତ କରି ପକାଉଛି ।

ଆଣ୍ଡ୍ରୋକ୍ଲସ୍ ମନରେ ସାହସ ବାନ୍ଧିଲା । ସେ ସେଠାରେ ବସିପଡ଼ି ସିଂହର ସେ ଗୋଡ଼ଟା ଆସ୍ତେ ଟେକି ଧରିଲା । ଦେଖିଲା, ଗୋଟାଏ ବଡ଼ କଣ୍ଟା ପାଦତଳେ ଫୁଟିଛି; ତା କୋପରେ ଗୋଡ଼ରେ ଘା ହୋଇଛି, ପଚ ଜମିଛି ।

ଆଣ୍ଡ୍ରୋକ୍ଲସ ଅଣ୍ଟାରୁ ଛୁରୀ ବାହାର କଲା । ସିଂହ ପାଦରୁ ଆସ୍ତେ କଣ୍ଟାଟି କାଢ଼ିଦେଲା । ଦୁଇ ହାତରେ ଥିର୍ କରି ଘା ଚିପି ଦେବାରୁ ପୂଯଚକ ବାହାରିଗଲା । ସିଂହକୁ ଆରାମ ଲାଗିଲା; ତା ମୁହଁରେ ଖସିର ଚିହ୍ନ ଦେଖାଗଲା ।

ପରଦିନ ସିଂହ ଉଠି ଚାଲବୁଲ କଲା । ଆଣ୍ଡ୍ରୋକ୍ଲସ୍ ସେହି ଗୁମ୍ଫାରେ ରହେ । ସିଂହ, ହରିଣ, ଶମ୍ବର ଶିକାର କରି ଗୁମ୍ଫାକୁ ଆଣେ; ଆଣ୍ଡ୍ରୋକ୍ଲସ୍ ପାଖରେ ରଖିଦିଏ । ଆଣ୍ଡ୍ରୋକ୍ଲସ୍ ଗୁମ୍ଫାଭିତରେ ନିଆଁ ଲଗାଇ ତାକୁ ପୋଡ଼ି ଖାଏ । ଆଉ ପଦାକୁ ବାହାରେ ନାହିଁ ।

ଏହିପରି କେତେକ ଦିନ କଟିଗଲା । ଥରେ ଶିକାରୀମାନେ ବଣକୁ ଶିକାର କରିବାକୁ ଆସି ସିଂହକୁ ଯନ୍ତାରେ ଧଇଲେ; ତାକୁ ପିଞ୍ଜରାଭିତରେ ପୂରାଇ ରଖି ପୋଷିଲେ ।

ସିଂହ ବନ୍ଦୀ ହେବାରୁ ଆଣ୍ଡ୍ରୋକ୍ଲସ୍ ଆଉ କିଛି ଖାଇବାକୁ ପାଇଲା ନାହିଁ । ଶେଷକୁ ବାଧ୍ୟ ହୋଇ ଗୁମ୍ଫା ଛାଡ଼ି ପଦାକୁ ଆସିଲା । ବଣଭିତରେ ଏଣେ ତେଣେ ବୁଲି ନିଜର ଖାଦ୍ୟ ସଂଗ୍ରହ କଲା ।

ପଦାରେ ବୁଲାଚାଲା କରିବାରୁ ଆଣ୍ଡ୍ରୋକ୍ଲସ ଦିନେ ଧରା ପଡ଼ିଲା । ଲୋକେ ତାକୁ ବାନ୍ଧି ରାଜାଙ୍କ ପାଖକୁ ନେଇଗଲେ । କ୍ରୀତଦାସ ଆଣ୍ଡ୍ରୋକ୍ଲସ୍; ସେ ଲୁଚି ପଳାଇ ଯାଇଥିଲା । ନିୟମ ଅନୁସାରେ ତାକୁ ମାରିଦେବାର କଥା । ରାଜା ଆଦେଶ ଦେଲେ, "ଆଣ୍ଡ୍ରୋକ୍ଲସକୁ ସିଂହ ପିଞ୍ଜରାକୁ ପକାଇଦିଅ । ସିଂହ ତାକୁ କାମୁଡ଼ି ଖାଇଯିବ । ଜୀଅନ୍ତା ମଣିଷକୁ ସିଂହ ଖାଇବ, ସେ କିପରି ନଷ୍ଟପଟ ହେବ—ତାହା ଦେଖିବା । ଏହିପରି ଛଟପଟ

ହେବା ଦେଖିଲେ, ଗୁଲରମାନେ ଆଉ ଖାସିନ ଘର ଗ୍ରୁଡ଼ ଲୁଚ ପଳାଇପିବେ ନାହିଁ ।”

ତାହା ହିଁ ହେଲା; ଟୋକାଏ ଦିନ ଠିକ୍ କରାଗଲା । ଗୃହଆଡ଼େ ଢେଙ୍ଗୁରା ଦିଆଯାଇଥିବାରୁ ବହୁତ ଲୋକ ମଜା ଦେଖିବାକୁ ଆସି ରୁଣ୍ଡ ହେଲେ । ଠିକ୍ ସମୟରେ ରାଜା, ମନ୍ତ୍ରୀ ଓ ତାଙ୍କର ପାଖ-ଲୋକେ ଆସିଲେ । ଦୁଇ ଜଣ ଲୋକ ଆଣ୍ଡ୍ରୋକ୍ଲସ୍‌ର ହାତଗୋଡ଼ ବାନ୍ଧି ସେଠାକୁ ଆଣିଲେ ।

ମଝିରେ ଆସି ସିଂହପିଞ୍ଜରା ରଖାହେଲା । ସେତେବେଳକୁ ଦୁଇ ଦିନ ହେଲା ସିଂହକୁ ଖାଇବାକୁ ଦିଆଯାଇ ନ ଥାଏ । ଖୁବ୍ ଭୋକ କରୁଥିବାବେଳେ ଆଣ୍ଡ୍ରୋକ୍ଲସ୍‌କୁ ତା ପାଖକୁ ଛାଡ଼ିଦିଆଯିବ ବୋଲି କଥା ହୋଇଥାଏ ।

ପିଞ୍ଜରା ଚାରିଆଡ଼େ ଲୋକ ରୁଣ୍ଡ ହୋଇଛନ୍ତି । ଗୋଟାଏ ମଣିଷକୁ ସିଂହ ଖାଇବ; କେଉଁ ଜାଗା ଆଗ କାମୁଡ଼ିବ, ମଣିଷ କଅଣ କରିବ—ଏ କଉତୁକ ଦେଖିବାକୁ ସମସ୍ତେ ଚାହିଁ ରହିଛନ୍ତି । ସେହି ସମୟରେ ପିଞ୍ଜରାର କବାଟ ଫିଟିଲା । ଆଣ୍ଡ୍ରୋକ୍ଲସ୍‌ର ହାତଗୋଡ଼ର ବନ୍ଧନ ଫିଟାଇ ତାକୁ ପିଞ୍ଜରାଭିତରକୁ ଠେଲି ଦିଆଗଲା । ପୁଣି କବାଟ ବନ୍ଦ ହୋଇଗଲା ।

ଦୁଇ ଦିନ ଉପାସରେ ସିଂହ ତାତି ରହିଥିଲା । ସେଥିରେ ପୁଣି ସେ ଦେଖୁଛି, ତା ଚାରିପାଖରେ ଅସଂଖ୍ୟ ମଣିଷ; ଅଥଚ ଗୋଟିକୁ ହେଲେ ସେ ଖାଇପାରୁ ନାହିଁ । ରାଗରେ ତା ଦେହ ଜଳୁଥାଏ । ବେକର କେଶରକୁ ଫୁଲାଇଦେଇ ସେ ଗର୍ଜନ ଛାଡ଼ୁ-ଥାଏ । ଥରକୁ ଥର ଲାଞ୍ଜରେ ଓଠକୁ ଚାଟି ପକାଉଥାଏ ।

ଆଣ୍ଡ୍ରୋକ୍ଲସ୍‌ର ସେତେବେଳକୁ ଦେହରେ ଚେତା ନ ଥାଏ । ଆଗରେ ସାକ୍ଷାତ୍ ଯମ—ହିଂସ୍ର ପ୍ରାଣୀ ସିଂହ । ଏହି ମୁହୂର୍ତ୍ତରେ ତାକୁ ଟିକିଟିକି କରି ଖାଇଯିବ । ଯେଉଁ କଲବଲ ସେ କରିବ—ସେଥି ଉପରେ ଆଣ୍ଡ୍ରୋକ୍ଲସ୍‌ର ରକ୍ତ ଶୁଖି ଯାଉଥାଏ; ଆଖି ବୁଜିହୋଇ ପଡ଼ିଥାଏ ।

ସିଂହ ଗୋଟାଏ ବଡ଼ ଗର୍ଜନ କରି କୁଦିପଡ଼ିଲା । ଉପରେ ଲୋକଙ୍କ ଆଖିପତା ଠିଆଗଲା । ମୁହୂର୍ତ୍ତକ ପରେ ସମସ୍ତେ ଆଖି ଫିଟାଇଲେ, ତାଙ୍କ ମଜାଦେଖା ବଦଳିଗଲା । ସମସ୍ତେ ଦେଖିଲେ, ଆଣ୍ଡ୍ରୋକ୍ଲସ୍ ତଳେ ପଡ଼ି ଗୋଟାସୁଦ୍ଧା ଥରୁଛି; ସିଂହ ତାକୁ ଦାନ୍ତରେ କାମୁଡ଼ି ଟିକ୍‌ଟିକ୍ କରି ପକାଇବ କଅଣ, ଓଲଟି ତା ଦେହଯାକ ଗୁଣ୍ଠୁଛି । ଆଗରେ ସେ ଭୟଙ୍କର ମୂର୍ତ୍ତି ଆଉ ନାହିଁ ।

ସିଂହକୁ ରଗାଇବା ପାଇଁ ଲୋକେ ପିଞ୍ଜରାରେ ବାଡ଼ି ପୂରାଇ ତାକୁ କେତେ କେଞ୍ଚିଲେ, କେତେ ଢେଲା ମାରିଲେ; ମାତ୍ର କିଛି ହେଲା ନାହିଁ ।

ଆଣ୍ଡ୍ରୋକ୍ଲସ୍ ମଧ୍ୟ କିଛି ସମୟ ପରେ ଉଠି ବସିଲା । ସେ ସାହସ ବାନ୍ଧି ସିଂହ ଆଡ଼କୁ ଭଲକରି ଚାହିଁଲା । ସେତେବେଳେ ଜାଣିପାରିଲା ଯେ, ବଣରେ ଯେଉଁ ସିଂହ ଗୋଡ଼ରୁ ସେ କଣ୍ଟା କାଢ଼ି ଦେଇଥିଲା, ଏ ସେହି ସିଂହ ।

ସିଂହ ତାର ଉପକାରୀ ବନ୍ଧୁକୁ ଆଗରୁ ଚିହ୍ନିପାରିଥିଲା; ତେଣୁ ତାର କିଛି ହେଲେ କ୍ଷତି କଲା ନାହିଁ ।

—୪—

ଆଫ୍ରିକା ଜଙ୍ଗଲରେ ନାନାପ୍ରକାରର ଜୀବଜନ୍ତୁ ଥାଆନ୍ତି । ସେମାନଙ୍କୁ ଶିକାର କରିବାପାଇଁ ବହୁଆଡ଼ୁ ଅନେକଲୋକ ଆସନ୍ତି; ବର୍ଷବର୍ଷ ଧରି ଆଫ୍ରିକାର ବଣଜଙ୍ଗଲରେ ରହନ୍ତି ।

ଥରେ ଜଣେ ସାହେବ ଶିକାର କରିବାକୁ ଆଫ୍ରିକା ଜଙ୍ଗଲ ଭିତରେ ପଶିଲେ । ତାଙ୍କ ସାଙ୍ଗରେ ତିନ ଚାରି ଜଣ ଚାକର ଓ ଦୁଇ ଜଣ ସେହି ଦେଶର ନିଗ୍ରୋ ଲୋକ ଥାଆନ୍ତି । ଗୋଟାଏ ବଡ଼ ପୋଷା କୁକୁର ମଧ୍ୟ ତାଙ୍କ ସାଙ୍ଗେସାଙ୍ଗେ ଥାଏ । ମାସକ ପାଇଁ ଖାଇବା ଜିନିଷ, ପାଣି, ଲୁଗାପଟା, ତମ୍ବୁ ଓ ହାତହତିଆର ସେମାନଙ୍କ ପାଖରେ ରହିଥାଏ ।

ସେ ସାହେବ କିପରି ସିଂହ ମୁହଁରୁ ରକ୍ଷା ପାଇଥିଲେ, ତାହା ତାଙ୍କ ଜୀବନଚରିତରେ ଲେଖି ଯାଇଛନ୍ତି । ସେ ଲେଖିଛନ୍ତି—

"ପ୍ରଥମ ଦିନ ଆମ ଦଳ ବେଶ ଫୁର୍ତ୍ତିରେ ବଣଭିତରେ ଚଳିଲୁ । ଦୁଇ ଜଣ ତ ବଣୁଆ ଲୋକ ସାଙ୍ଗରେ ଥାଆନ୍ତି; ସେମାନେ ବାଟ କଢ଼ାଇ ନେଉଥାଆନ୍ତି । 'ବାଘା' କୁକୁର ମଧ୍ୟ ଆମ ଆଗେ ଆଗେ ଚାଲିଥାଏ ।

ଦିନଯାକ ବାଟ ଚାଲିଚାଲି ପ୍ରାୟ ପନ୍ଦର ମାଇଲ ଭିତରକୁ ପଶିଲୁ । ସନ୍ଧ୍ୟା ହେଲା—ରାତିରେ ବାଟ ଦିଶିବ ନାହିଁ, ବାଟ ଚାଲିବା ମଧ୍ୟ ନିରାପଦ ନୁହେଁ; ତେଣୁ ଗୋଟିଏ ପାହାଡ଼ ଉପରକୁ ଉଠି ସେଠାରେ ତମ୍ବୁ ପକାଇଲୁ । ପାହାଡ଼ ଉପରେ ଗଛଲତା କିଛି ନ ଥାଏ; ଚାରିଆଡ଼ ପରିଷ୍କାର । ତାର ଦୁଇ ପାଖରେ ପ୍ରାୟ ମାଇଲଏ ଅନ୍ତରରେ ଆଉ ଦୁଇଟି ସେହିପରି ପାହାଡ଼ ମୁଣ୍ଡ ଟେକି ଠିଆ ହୋଇଥାଏ; ମାତ୍ର ସେଠାରେ ଗୁଡ଼ାଏ ଗଛଲତା ଥାଏ, ଜାଗାଟା ଅରମା ବୋଧ ହେଉଥାଏ । ତେଣୁ ଏହି ପାହାଡ଼ରେ ଆମ ତମ୍ବୁ ପଡ଼ିବା ଠିକ୍ ହେଲା ।

ଚାକର ରନ୍ଧାରନ୍ଧି କରିବାରେ ଲାଗିଗଲେ । ମୁଁ ଆରାମ ଚଉକିରେ ବସି ବଣଭିତରକୁ ଚାହିଁ ରହିଥାଏ । ନିଗ୍ରୋ

ଦୁଇ ଜଣ ବଣଭିତରକୁ ଶିକାର କରିବାକୁ ଯାଇଥାନ୍ତି । ହରିଣ କି ବାର୍‌ହା କିଛି ମାରି ନ ଆଣିଲେ ରାତିରେ ଏତେ ଲୋକ ଖାଇବେ କଅଣ ?

କିଛି ସମୟ ପରେ ନିଗ୍ରୋ ଦୁଇ ଜଣ ଫେରିଲେ । ସେମାନଙ୍କ ସାଙ୍ଗରେ ଆଉ ତିନି ଜଣ ସେହି ବଣର ବଣୁଆ ଲୋକ ଥାଆନ୍ତି । ତାଙ୍କ ରୂପ ଭେକ ଦେଖି ମୋତେ ପ୍ରଥମେ ତ ଭୟ ଲାଗିଲା ।

ନିଗ୍ରୋ ଦୁଇ ଜଣ କହିଲେ, "ହଜୁର୍, ଆମେ ଗୋଟାଏ ବାର୍‌ହା ମାରି ଆଣିଛୁ । ବଣଭିତରେ ସିଂହ ଆମକୁ ଗୋଡ଼ାଇ ଥିଲା । ଏହି ତିନି ଜଣଙ୍କ ଯୋଗୁଁ ରକ୍ଷା ପାଇଯାଇଛୁ । ସେଇଥିପାଇଁ ଏମାନଙ୍କୁ ସାଙ୍ଗରେ ଧରି ଆଣିଛୁ ।"

ମୁଁ ସେ ଲୋକଙ୍କୁ ଦେଖି ଟିକିଏ ଡରି ଯାଇଥିଲି । ତେଣୁ ସେମାନଙ୍କୁ ପାଖରୁ ବିଦା କରିଦେବା ପାଇଁ ଗୋଟାଏ କୌଶଳ କଲି । ନିଗ୍ରୋ ଦୁଇଟିଙ୍କୁ କହିଲି, "ସେ ବାର୍‌ହାର ଗୋଡ଼ ଗୋଟାଏ ଏ ତିନି ଜଣଙ୍କୁ ଦେଇଦିଅ ।"

ନିଗ୍ରୋ ଦୁଇଟି ବାର୍‌ହାର ଗୋଡ଼ କାଟିଆଣି ସେ ତିନିଜଣଙ୍କୁ ଦେଲେ । ବିକଟ ଦାନ୍ତ ଦେଖାଇ ସେମାନେ ନିଜର ଆନନ୍ଦ ପ୍ରକାଶ କଲେ । ତା ପରେ ସାଙ୍ଗେସାଙ୍ଗେ ଗୋଡ଼ ଗୋଟାକୁ ସେହିପରି ପାଟିରେ ପୂରାଇ ଚୋବାଇ ଚୋବାଇ ସେଠାରୁ ଚାଲିଗଲେ ।

ମୁଁ ପଚାରିଲି—ଏମାନେ କଣ ରାକ୍ଷସ ?

ନିଗ୍ରୋ ଦୁହେଁ ଉତ୍ତର ଦେଲେ—"ହଁ ହଜୁର୍, ଏ ବଣଭିତରେ ଠାଏଠାଏ ରାକ୍ଷସ ଅଛନ୍ତି; ସେମାନେ ମଣିଷକୁ ମଧ୍ୟ ଖାଇଯାଆନ୍ତି । ମାତ୍ର ଏମାନେ କଞ୍ଚା ମାଂସ ଖାଇଲେ ବି

ମଣିଷ ଖାଆନ୍ତି ନାହିଁ । ବଣଭିତରେ ବାଘ ସିଂହଙ୍କ ସାଙ୍ଗରେ ରହିରହି ଏମାନଙ୍କର ସେହିଭଳି ସ୍ୱଭାବ ହୋଇଗଲାଣି ।"

ଖାଇପିଇ ସମସ୍ତେ ଶୋଇଲେ । ମୁଁ ମଧ୍ୟ ତମ୍ବୁଭିତରେ ଯାଇ ଶୋଇଲି । ଆମ ତମ୍ବୁର ଗୃହପଟେ ଖଣ୍ଡେଦୂରରେ କାଠ ପତର ଜମାଇଁ ନିଆଁ ଲଗାଇ ଦିଆଯାଇଥାଏ । ସେ ନିଆଁ ହୁ ହୁ ଜଳୁଥାଏ । କୌଣସି ଜନ୍ତୁ ହଠାତ୍ ଆସି ଆମ ଉପରେ ଚଢ଼ାଉ କରିପାରିବ ନାହିଁ—ଏଥିପାଇଁ ଏ ବ୍ୟବସ୍ଥା ହୋଇଥାଏ ।

ଗରମ ଖୁବ୍ ବେଶି; ମୋତେ ଜମା ନିଦ ହେଲା ନାହିଁ । ପ୍ରାୟ ରାତି ଗୋଟାଏ ହେବ, ମୁଁ ତମ୍ବୁଭିତରୁ ଆସି ପଦାରେ ଚଉକରେ ବସିଲି । ହଠାତ୍ ଆଗରେ ଥିବା ପାହାଡ଼ଉପରେ ଆଖି ପଡ଼ିଗଲା । ମୋତେ ଜଣାଗଲା, ସେଠାରେ ତିନି ଚାରୋଟି କଣ ଜନ୍ତୁ ଖେଳୁଛନ୍ତି । ମୁଁ ତମ୍ବୁଭିତରୁ ବନ୍ଧୁକ ଓ ଦୂରବୀକ୍ଷଣ ଯନ୍ତ୍ର ଆଣି ପୁଣି ଚଉକରେ ବସିଲି ।

ଦୂରବୀକ୍ଷଣ ଯନ୍ତ୍ର ଆଖିରେ ଲଗାଇ ଦେଖିଲି । ସେହି ସମୟରେ ନିଗ୍ରୋ ଚାକରଟି ପାଖକୁ ଆସି କହିଲା, "ହଜୁର୍, ସେ ପାହାଡ଼ରେ ସିଂହ ଘର । ସେଠାରେ ସିଂହଛୁଆ ଚାରୋଟି ଖେଳୁଛନ୍ତି । ବୋଧହୁଏ ପାଖରେ କେଉଁଠି ତାଙ୍କ ବାପ ମା ଅଛନ୍ତି । ସେମାନେ ବର୍ତ୍ତମାନ ପଦାକୁ ବାହାରିବେ; ହୁଏତ ଶିକାର ଖୋଜିବାକୁ ଯିବେ । ରାତି ପାହିଲାବେଳକୁ ଶିକାର ଆଣି ପୁଣି ଘରକୁ ଫେରିବେ ।"

ମୁଁ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସେତେବେଳକୁ ସେ ସିଂହଛୁଆଙ୍କୁ ଭଲରୂପେ ଦେଖିପାରିଥିଲି—ଠିକ୍ ମୋ ବାଘା କୁକୁରର ଉଚ୍ଚ ହେବେ ।

ସେହି ସମୟରେ ସେମାନଙ୍କ ମା ଆସି ସେଠାରେ ପହଞ୍ଚିଲା । ଛୁଆଙ୍କ ସହିତ କିଛି ବେଳ ଖେଳିଲା । କେତେକ ସମୟ ପରେ ଗୋଟାଏ ଗର୍ଜନ ଶୁଣାଗଲା । ସାଙ୍ଗେସାଙ୍ଗେ ବଡ଼ ସିଂହଟାଏ ଭିତରୁ ସେଠାକୁ ଆସିଗଲା । ତା ମୁଣ୍ଡର ବାଳ-ସବୁ ଏପରି ଠିଆ ହୋଇଥାଏ ଯେ, ଖଜୁରି ଗଛ ଅଗ ପରି ତାହା ଦେଖା ଯାଉଥାଏ ।

ମୁଁ ଦେଖିଲି, ସିଂହଟା ଆମର ନିଆଁ ଆଡ଼କୁ ଚାହିଁଉଛନ୍ତି । ଶିକାରୀ ନିଗ୍ରୋଟି ମୋତେ କହିଲା, "ସିଂହ ଦୁଇଟା ବର୍ତ୍ତମାନ ଆମର ପାଖକୁ ହିଁ ଆସିବେ । ରାତିକ ଭିତରେ ସେମାନେ ପନ୍ଦର ଷୋଳ ମାଇଲ ବାଟ ବୁଲି ଶିକାର ଆଣିପାରନ୍ତି । ଆମର ଏ ଯେ ନିଆଁ ଜଳୁଛି, ଏହା ହିଁ ଆମର କାଳ ହେଲା । ନିଆଁ ହେତୁ ଆମେ ଏଠାରେ ଥିବାର ସେ ଜାଣିପାରିଲା । ଆଉ, ଏ ନିଆଁ ଡେଇଁପଡ଼ିବା ତା ପକ୍ଷରେ ଅତି ସାମାନ୍ୟ କଥା ।

ମୁଁ ଏଣେ ନିଗ୍ରୋ କଥା ଶୁଣୁଥାଏଁ, ତେଣେ ଦୂରବୀକ୍ଷଣ ଯନ୍ତ୍ରରେ ସିଂହର ଗତିବିଧି ଦେଖୁଥାଏଁ ।

କିଛି ସମୟ ପରେ ସିଂହ ଓ ସିଂହୀ ନାଚକୁଦ ପାହାଡ଼ ତଳକୁ ଓହ୍ଲାଇଲେ । ଛୁଆ ଚାରୋଟି ସେଠାରେ ଖେଳୁ ଥାଆନ୍ତି ।

ମୁଁ ଧରିନେଲି ଯେ, ଆମେ ଦଳଟିଯାକ ଆଜ ଏଠାରେ ସିଂହ ପେଟକୁ ଯିବୁ । ତଥାପି ଶେଷ ପର୍ଯ୍ୟନ୍ତ ତ ଚେଷ୍ଟା କରିବାକୁ ହେବ । ତେଣୁ ସମସ୍ତଙ୍କୁ ଉଠାଇ ବନ୍ଧୁକ ଧରି ଠିଆ ହେବାକୁ ଆଦେଶ ଦେଲି ।

କିଛି ସମୟ ପରେ ପୁଣି ସେ ପାହାଡ଼କୁ ଚାହିଁ ଦେଖିଲି, ଉପରେ ଛୁଆଗୁଡ଼ିକ ଖେଳୁଛନ୍ତି । ତଳୁ ଦୁଇ ଜଣ ଲୋକ

ହାମୁଡ଼େଇ ହାମୁଡ଼େଇ ଉପରକୁ ଉଠୁଛନ୍ତି । ମାତ୍ର ତେଣେ ବେଶି ସମସ୍ତ ଗୁହିଁବାକୁ ବେଳ ନ ଥାଏ । ସିଂହ ଆସିଲେ କପରି କଅଣ କରିବାକୁ ହେବ, ମୋ ଲୋକଙ୍କୁ ତାହା ବତାଇ ଦେଉଥାଏଁ ।

ଗୁହିଁଗୁହିଁ ରାତି ପାହିଲା; ମାତ୍ର ସିଂହର ଦେଖା ନାହିଁ । ଦିନ ହେବାରୁ ଆମେ ଟିକଏ ଆଶ୍ୱସ୍ତ ହେଲୁ ।

ଲୁଗାପଟା ବନ୍ଧାବନ୍ଧ କରି ସେଠାରୁ ବାହାରୁଛୁ, ଏହି ସମସ୍ତରେ କାଲି ରାତିର ସେ ବଣୁଆ ଲୋକ ଦୁଇ ଜଣ ଆସିଲେ । ସେମାନଙ୍କ ହାତରେ ଗୋଟିଏ ସିଂହଛୁଆ । ସେଇଟିକୁ ସେ ମୋତେ ଉପହାର ଦେଲେ । ମୋ ଖାନ୍‌ସମା ଛୁଆଟିକୁ ଧରି କିଛି ଗୁଣ୍ଡଦୁଧ ଖୁଆଇଦେଲା । ତା ପରେ ସିଂହଛୁଆ ଖାନ୍‌ସମାକୁ ଛାଡ଼ି ଆଉ କୁଆଡ଼େ ଯିବାକୁ ରାଜି ହେଲା ନାହିଁ ।

ବଣୁଆଙ୍କ କଥାରୁ ଜାଣିଲି, ସେମାନେ ଗଲା ଚାରି ପାଞ୍ଚ ଦିନ ହେବ ଏ ଛୁଆକୁ ଧରିବା ପାଇଁ ଚେଷ୍ଟା କରୁଥିଲେ । କାଲି ସୁଯୋଗ ମିଳିଗଲା । ସିଂହ ଓ ସିଂହୀ ଶିକାର ଖୋଜିବାକୁ ଚାଲିଗଲାରୁ ଏମାନେ ପାହାଡ଼ ଉପରକୁ ଚଢ଼ିଲେ । ଗୋଟାଏ ଛୁଆ ପଳାଇଗଲା, ଦୁଇଟାକୁ ଧରି ନ ପାରିବାରୁ ବର୍ଚ୍ଛାରେ ମାରି ପକାଇଛନ୍ତି; ବାକି ଏଇ ଗୋଟିଏ ଧରା ପଡ଼ିଲା ।

ସିଂହଛୁଆଟିକୁ ଦେଖି ମୁଁ ଭାରି ଖୁସି ହୋଇ ଯାଇଥିଲି; ତେଣୁ ଯତ୍ନରେ ରଖିବା ପାଇଁ ଖାନ୍‌ସମାକୁ ଆଦେଶ ଦେଲି ।

ନିଗ୍ରୋ ଚାକରଟି କହିଲା, "ହଜୁର, ସିଂହଛୁଆ ରଖିବା ମହାବିପଦ । ଯେତେ ଦୂରରେ ଯେଉଁଠାରେ ଥାଆନ୍ତୁ ପଛକେ, ତାର ବାପ ମା ନିଶ୍ଚୟ ଯାଇ ଚଢ଼ାଉ କରିବେ, ପ୍ରତିଶୋଧ ନେବେ ।"

ମୁଁ କିନ୍ତୁ ସେ କଥାରେ ବିଶ୍ୱାସ କଲି ନାହିଁ । ସିଂହ-ଛୁଆଟିକୁ ସାଙ୍ଗରେ ଧରି ଆମେ ଆମର ଯାତ୍ରା ଆରମ୍ଭ କରିଦେଲୁ । ସେ ବଣୁଆଲୋକ ଦୁଇଜଣଙ୍କୁ କିଛି ବିସ୍କୁଟ ପୁରସ୍କାର ଦେଲି ।

ସେଦିନ ମଧ୍ୟ ବଣଭିତରେ ପନ୍ଦର କୋଡ଼ିଏ ମାଇଲ ବାଟ ଚାଲିଲୁ । କେତେ ରକମର ଜୀବଜନ୍ତୁ ଦେଖିଲୁ, କେତେ ମଧ୍ୟ ମାରିଲୁ ।

ରାତି ହେବା ଆଗରୁ ଗୋଟିଏ ପରିଷ୍କାର ଉଚ୍ଚ ଜାଗାରେ ତମ୍ବୁ ପକାଇ ରହିଲୁ । ସେଦିନ ରାତିରେ ନିଗ୍ରୋ ଚାକର ଆସି କହିଲା, "ଏଠାରେ ବହୁତ ହରିଣ ଅଛନ୍ତି । ଚାରିଆଡ଼େ ସେମାନଙ୍କ ପାଦଚିହ୍ନ ଦେଖାଯାଉଛି । କାଲି ଦିନଟା ଏଠାରେ ରହି ହରିଣ ଶିକାର କରିବା ।"

ରାତି ପାହାନ୍ତାରୁ ଧମସ୍ତେ ଉଠି ହରିଣ ଶିକାରକୁ ବାହାରିଲୁ । ବହୁତଆଡ଼ ଖୋଜାଖୋଜି କଲୁ; କିନ୍ତୁ କେଉଁ-ଠାରେ ହେଲେ ଗୋଟିଏ ହରିଣ ଦେଖିବାକୁ ପାଇଲୁ ନାହିଁ ।

କ୍ରମେ ରାତି ପାହିଆସିଲା । ଦୂରରେ ଗୋଟାଏ ଝରଣା ପାଖରେ ଗୁଡ଼ାଏ ହରିଣ ଦେଖାଗଲେ । ମୁଁ ଲୋକମାନଙ୍କୁ ସେ ଝରଣାପାଖକୁ ପଠାଇଦେଲି । ସେମାନଙ୍କୁ କହିଲି, ସବୁଆଡ଼ ବାଟ ଜଗି ରହ; ଯେଉଁ ବାଟେ ହରିଣ ଦଳ ଫେରିବେ, ସେଠାରେ ତାଙ୍କୁ ମାରିବା । ଏପାଖ ବାଟ ମଧ୍ୟ ମୁଁ ଜଗି ରହୁଛି ।

ମୋ ସାଙ୍ଗରେ ମୋ କୁକୁରଟା ବି ଥାଏ । ସେ ଭୌ ଭୌ ବୋବାଇ ଉଠିଲା । ତା ପାଟି ଶୁଣିଲେ ହରିଣ ଆସିବେ ନାହିଁ; ତେଣୁ ତାକୁ ଦୁଇ ତିନିବାର ଇସ୍‌ଇସ୍ କଲି; ମାତ୍ର ସେ ନ ଶୁଣିବାରୁ ଯୋରରେ ଗୋଟାଏ ଗୋଇଠା ପକାଇଲି । ତା ପେଟରେ

ଗୋଇଠାଟା ବାଜିଲା । ତାକୁ ନିଶ୍ଚୟ ଭାରି କାଟିଥିବ । ସେ ମୁହଁରୁ କେଁ କେଁ ଶବ୍ଦକରି ଚୁପ୍ ହେଲା ।

ମୁଁ ହରିଣ ଆସିବା ବାଟ ଚାହିଁ ରହିଛି; ବାଁ ପାଖରୁ ଗୋଟାଏ ମସ୍ତବଡ଼ ସିଂହ ମୋ ଉପରକୁ କୁଦିପଡ଼ିଲା । ତା ପଞ୍ଝା ମାଡ଼ରେ ମୁଁ ତଳେ ଗଡ଼ିଗଲି । ମୋ ହାତରୁ ବନ୍ଧୁକ ଛିଟିକି ଖଣ୍ଡେଦୂରରେ ପଡ଼ିଲା । ସିଂହର ମୂର୍ତ୍ତି ଦେଖି ମୋ ରକ୍ତ ପାଣି ହୋଇଆସିଲା; ଆଖି ଫିଟାଇ ତାକୁ ଚାହିଁପାରିଲି ନାହିଁ ।

ମୋତେ ତା ପେଟତଳେ ରଖି ଚାରିପାଖରେ ଚାରି ଗୋଡ଼ ଦେଇ ସେ ଠିଆହେଲା । ତା ପରେ କଅଣ ଭାବି ତା ଆଗ ଗୋଡ଼ ପଞ୍ଝାରେ ଖୁବ୍ ଜୋରରେ ମୋତେ ଲେଉଟାଇ ପକାଇଲା । ବିଲେଇ ତା ଛୁଆକୁ ଯେପରି ବେକରୁ କାମୁଡ଼ି ଧରି ନେବା ଆଣିବା କରେ, ସେ ସେହିପରି ମୋ ବେକ କାମୁଡ଼ି ମୋତେ ଓହଳାଇ ବଣଭିତରକୁ ଚାଲିଗଲା । ତା ମୁନିଆଁ ଦାନ୍ତରେ ଜାମା ଫୁଟି ମୋ କାନ୍ଧ ମଧ୍ୟ ଫୁଟିଗଲା । ମୋତେ ଅସହ୍ୟ ଯନ୍ତ୍ରଣା ହେଉଥାଏ; ଝରଝର ରକ୍ତ ବି ଗଡ଼ି ପଡ଼ୁଥାଏ ।

କିଛି ବାଟ ଗଲା ପରେ ମୋତେ ପୁଣି ସେ ତଳେ ଶୁଆଇ ଦେଲା । ଚାରିପାଖରେ ଚାରି ଗୋଡ଼ ରଖି ଠିଆ ହୋଇ ରହିଲା । ମୁଁ ଠିକ୍ ତା ପେଟତଳେ ରହିଥାଏଁ ।

ମୁଁ ସ୍ଥିର ଜାଣିଲି ଯେ, ମୋ ଜୀବନ ଆଉ ଅଳ୍ପ ସମୟ ମାତ୍ର । ଏହି ବଣଭିତରେ ସମସ୍ତଙ୍କ ଅଜଣାତରେ ସିଂହ କାମୁଡ଼ାରେ ହିଁ ଛଟପଟ ହୋଇ ମରିବି । ଦୁନିଆରେ କେହି ମୋ ବିଷୟରେ କିଛି ଜାଣିପାରିବେ ନାହିଁ ।

ମୁଁ ପ୍ରଥମେ ତଳମୁହାଁ ହୋଇ ପଡ଼ିଥିଲି ସିଂହ ତା ଆଗ ଗୋଡ଼ ପଞ୍ଝାରେ ପୁଣି ମୋତେ ଓଲଟାଇ ପକାଇଲା । ମୁଁ

ଚିତ୍ ହୋଇ ପଡ଼ିଲି ଓ ଏଥରକ ସିଂହ ମୁହଁକୁ ସାହସ କରି ଟିକିଏ ଚାହିଁଲି ।

କ୍ରମେ ମୋ ଦେହ ଅବଶ ହୋଇ ଆସୁଥାଏ । ମୋର ହଠାତ୍ ମନେ ପଡ଼ିଗଲା, ମୋ ଅଣ୍ଟାରେ ଗୋଟାଏ ଛୁରି ଅଛି । ମୁଁ ସବୁବେଳେ ସେ ଦାଢ଼ୁଆ ଛୁରିଟି ମୋ ପାଖରେ ରଖିଥାଏ ।

ସିଂହ ସେହିପରି ଠିଆ ହୋଇ ଗୋଟାଏଁ ଗର୍ଜନ ଛାଡ଼ିଲା । କିଛି ସମୟ ଲାଙ୍ଗୁଡ଼ ପିଟିଲା; ପୁଣି ଗର୍ଜନ କଲା ।

ମୁଁ ଜାଣିଗଲି, ସିଂହ ଗର୍ଜନ କରି ତା ସାଙ୍ଗକୁ ଡାକୁଛି । ସେ ଏକା ମୋତେ ଖାଇବ ନାହିଁ; ଦୁହେଁଯାକ ସାଙ୍ଗ ହୋଇ ଖାଇବେ ।

ତିନି ଥର ସେ ଗର୍ଜନ କଲା । ଆଖପାଖରେ ବଜ୍ର ପଡ଼ି ଘଡ଼ଘଡ଼ି ମାଇଲେ ଯେପରି ଶବ୍ଦ ହୁଏ, ମୋ କାନପାଖରେ ସିଂହ ଗର୍ଜନ ଠିକ୍ ସେହିପରି ଜଣାଯାଉଥାଏ । ପ୍ରତିଥର ଗର୍ଜନରେ ମୋ ଦେହରୁ ପ୍ରାଣ ଛାଡ଼ିଗଲା ପରି ଲାଗୁଥାଏ ।

ତଥାପି ସାହସ ବାନ୍ଧିଲି । ଖାଇବା ହାତରେ ଆସ୍ତେ ଅଣ୍ଟାରୁ ଛୁରିଟି ବାହାର କରି ଆଣିଲି । ଖୁବ୍ ଦୃଢ଼ଭାବରେ ଧରିଥାଏଁ ।

ସିଂହ ଅଳ୍ପ ସମୟ ଅପେକ୍ଷା କରି ପୁଣି ଗର୍ଜନ କରିବାକୁ ଆରମ୍ଭକଲା । ସେ ଗର୍ଜନ କଲାବେଳେ ଉପରକୁ ମୁହଁ ଟେକୁଥାଏ । ଏଥରକ ମୁହଁ ଉପରକୁ ଟେକିଲା ମାତ୍ରକେ ମୁଁ ଛୁରୀଟା ଖୁବ୍ ଜୋରରେ ତା ଛାତିରେ ଭୁସିଦେଲି । ଛୁରିଟି ବେଣ୍ଟ ପର୍ଯ୍ୟନ୍ତ ତା ଦେହଭିତରକୁ ଚାଲିଗଲା ।

ତା ଗର୍ଜନ ସେଇଠାରେ ରହିଗଲା । ଆଶ୍ଚର୍ଯ୍ୟର କଥା, ସିଂହଟା ସେଠାରେ ପଡ଼ିଲା ନାହିଁ କି ମୋତେ ଆଉ କୌଣସି

ପ୍ରକାରେ ଆଘାତ କଲା ନାହିଁ । ମୋ ଉପରୁ ଡେଇଁପଡ଼ି କହୁ ବାଘ ଆଗକୁ ଚାଲିଗଲା । ତା ପରେ ବାଁ ପାଖରେ ଥିବା ଗୋଟାଏ ବୁଦା ଜଙ୍ଗଲ ଭିତରେ ଅଦୃଶ୍ୟ ହୋଇଗଲା ।

ମୋର ଉଠିବାକୁ ଶକ୍ତି ନ ଥାଏ । ସେହି ସମୟରେ ଅଳ୍ପ ଦୂରରେ ପୁଣି ସିଂହଗର୍ଜନ ଶୁଣାଗଲା । ମୁଁ ଜାଣିଲି ଯେ, ସିଂହର ଗର୍ଜନ ଶୁଣି ସିଂହୀ ଆସିଗଲା । ମୁଁ ତରତର ହୋଇ ଉଠି ପାଖରେ ଥିବା ଗଛ ଉପରେ ଚଢ଼ିଗଲି । ଗୋଟାଏ ଡାଳରେ ମେଞ୍ଚେଇ ପଡ଼ିଲି ।

ମୋ କୁକୁରଟା କୁଆଡ଼ୁ ଆସି ସେ ଗଛମୂଳେ ବସିଥାଏ । ମୁଁ ତାକୁ ବହୁତ ଥର ହୁରୁଡ଼ାଇଲି; ମାତ୍ର ସେ ସେଠାରୁ ଜମା ଗଲା ନାହିଁ । ମୁଁ ରାଗରେ ଗୋଡ଼ରୁ ପଟେ ଯୋତା ଫିଟାଇ ତା ଉପରକୁ ଫୋପାଡ଼ିଲି । ସେ ଯୋତାମାଡ଼ ଖାଇ ଟିକଏ ଘୁଞ୍ଚିଗଲା, ପୁଣି ଆସି ଗଛମୂଳେ ବସିଲା ।

ହୁହୁଁ ହୁହୁଁ ସିଂହୀ ଆସି ସେଠାରେ ପହଞ୍ଚିଗଲା, ଗଛମୂଳେ ଓ ପାଖଆଖ ଜାଗା ଆଗ ଶୁଙ୍ଘି ପକାଇଲା । ତା ପରେ ଶୁଙ୍ଘି ଶୁଙ୍ଘି ସେ ବୁଦାଆଡ଼କୁ ଗଲା । ମୁଁ ଗଛରୁ ଚାହିଁ ଦେଖୁଥାଏଁ, ବୁଦାଭିତରେ ଅଳ୍ପ ଦୂରରେ ସିଂହଟା ପଡ଼ିଛି—ବୋଧହୁଏ ମରିଗଲାଣି । ସିଂହୀ ତା ପାଖକୁ ଯାଇ ତାକୁ ଶୁଙ୍ଘିଲା, ମୁହଁରେ ବହୁତ ଠେଲାଠେଲି କଲା । ଶେଷକୁ ପୁଣି ଗର୍ଜନ ଛାଡ଼ି ଗଛ ମୂଳକୁ ଦଉଡ଼ି ଆସିଲା ।

ସେ କେତେବେଳୁ ଦେଖିସାରିଲାଣି ଯେ, ମୁଁ ଗଛ ଡାଳରେ ବସିଛି । ମୋତେ ଧରିବା ପାଇଁ ସେ କୁଦା ମାରିଲା । ଡାଳ ପାଖରେ ପହଞ୍ଚିବାକୁ ଠିକ୍ ହାତେ ବାଟ ଅଛି, ତଳେ ବାଘା କୁକୁର ଭୋ ଭୋ ଗର୍ଜିଉଠିଲା । ସିଂହୀଟା ଲମ୍ଫ କରି ତଳେ

ପଡ଼ିଗଲା । ରାଗରେ କୁକୁରକୁ କାମୁଡ଼ିବାକୁ ଗୋଡ଼ାଇଲା; ମାତ୍ର କୁକୁର ଦଉଡ଼ି ପଳାଇଗଲା ।

କିଛିଏ ସମୟ ଗଛମୂଳେ ବସି ସିଂହୀ ପୁଣି କୁଦାମାରିଲା । ସେତେବେଳେ ମଧ୍ୟ ବାଘା ତାକୁ ସେହିପରି ବାଧା ଦେଲା । ସିଂହୀ ଏଣେ ମୋତେ ଧରିପାରୁ ନ ଥାଏ, କି ତେଣେ ବାଘାକୁ ମାରିପାରୁ ନ ଥାଏ । ଥରେ ଉପରକୁ କୁଦାମାରେ, ଥରେ ବାଘା ପଛରେ ଗୋଡ଼ାଏ—ଏହିପରି ଦୁଇ ଘଣ୍ଟାପାଏ ଚାଲିଥାଏ ।

ସେତେବେଳକୁ ପ୍ରାୟ ଦିନ ଦଶଟା ସମୟ ହେବ । ମୋ ଦଳର ଲୋକେ ମୋତେ ଖୋଜି ଖୋଜି ସେଠାରେ ଆସି ପହଞ୍ଚିଲେ । ବାଘାର ଭୌ ଭୌ ଶବ୍ଦରେ ସେମାନେ ମୋ ରହିବା ଜାଗା ଜାଣିପାରିଥିଲେ ।

ସେମାନଙ୍କ ହାତରେ ବନ୍ଧୁକ ଥିଲା । ତିନ ଦିଗରୁ ତିନ ଜଣ ଏକାବେଳକେ ଗୁଳି କଲେ । ଥରେ ମାତ୍ର ଗର୍ଜନ କରିବାକୁ ସିଂହୀ ସମୟ ପାଇଲା ନାହିଁ । ସାଙ୍ଗେସାଙ୍ଗେ ଗଛମୂଳେ ପଡ଼ିଗଲା । ଅଳ୍ପ ସମୟ ବାଡ଼େଇପିଟି ହେଲା, ତା ପରେ ସବୁ ଶେଷ ।

ସମସ୍ତେ ମୋତେ ଧରାଧରି କରି ଗଛରୁ ଓହ୍ଲାଇ ଆଣିଲେ । ନିଗ୍ରୋ ଚାକରଟି ବଣଭିତରୁ କଅଣ ସବୁ ଗଛର ପତ୍ର ଆଣି ଛେଚି ମୋ କାନ୍ଧ ଘାଆରେ ଲଗାଇଦେଲା ।

ସେହି ମଧ୍ୟ ଚହ୍ଲିପାରି କହିଲା, "ହଜୁର, ସେଉଁ ସିଂହ-ଛୁଆ ଆମ ସାଙ୍ଗରେ ଅଛି, ଏ ଦୁହେଁ ତାର ବାପ ମା । ସେଦିନ ପାହାଡ଼ରେ ଏହିମାନଙ୍କୁ ହିଁ ମୁଁ ଦେଖିଥିଲି ।"

ମୋ ବାଘା କୁକୁର ଯୋଗୁଁ ହିଁ ମୁଁ ସେ ଦିନ ସିଂହମୁହଁରୁ ରକ୍ଷା ପାଇଥିଲି—ଏକଥା ଜୀବନରେ କଦାପି ଭୁଲିପାରିବି ନାହିଁ ।



ଆଫ୍ରିକା ଦେଶରେ ରେଲ ରାସ୍ତା ପଡ଼ିଲାବେଳେ ଭାରତ ଦେଶରୁ ବହୁତ ଲୋକ ସେଠାକୁ ଯାଇଥିଲେ । ପ୍ରତିଦିନ ହଜାର ହଜାର କୁଲି ନାନାପ୍ରକାରର ହତିଆର ସାଙ୍ଗରେ ନେଇ କାମକୁ ଯାଆନ୍ତି । ଜଙ୍ଗଲ ସଫା କରନ୍ତି । ତା ସାଙ୍ଗେସାଙ୍ଗେ କେତେ ବାଘ, ଭାଲୁ, ସାପ, ବାରହା ଆଦି ପଶୁ ଯେ ମାରନ୍ତି, ତାର ଇୟତ୍ତା ନ ଥାଏ ।

ସେହି ସମୟରେ ଭନ୍ ଜୋହାନ୍ସବର୍ଗ ନାମରେ ଜଣେ ଇଞ୍ଜିନିୟର ସେଠାରେ କାମ କରୁଥାନ୍ତି । ସେ ବଡ଼ ଶିକାରୀ । ସେଠାରେ ରହିବା ସମୟ ମଧ୍ୟରେ ସେ ଅନେକ ବଡ଼ ବଡ଼ ବାଘ ଓ ଆଉସବୁ ଜନ୍ତୁ ମାରିଥିଲେ ।

ସେହି ଦେଶର ଜଣେ ବଡ଼ ସାହସୀ ଓ ବନୁଆ ଲୋକକୁ ସେ ସବୁବେଳେ ପାଖରେ ରଖିଥିଲେ । ତାର ନାମ ଉଆମ୍ବା । ଉଆମ୍ବାର ଚେହେରା ଯେପରି ରାକ୍ଷସ ପରି, ସାହସ ମଧ୍ୟ ସେହିପରି ଅସୀମ । ଡର ଭୟ କଅଣ, ସେ ମୋଟେ ଜାଣେ ନାହିଁ । ବିନା ବନ୍ଧୁକରେ ସେ ତା ଜୀବନ କାଳ ଭିତରେ ପାଞ୍ଚ ସାତଟା ମହାବଳ ବାଘ ମାରି ପକାଇଥାଏ ।

ଥରେ ଜୋହାନ୍ସବର୍ଗ ସାହେବ ଉଆମ୍ବାକୁ ଡାକି କହିଲେ, "ଏଣିକି ଦୁଇ ଚାରିଟା ସିଂହ ଶିକାର କରିବାକୁ ମନ ହେଉଛି । ବାଘ ମାରି ମାରି ମନ ପୂରିଗଲାଣି । ସିଂହ ଥିବା ବଣକୁ ମୋତେ ନେଇଯାଆନ୍ତୁ କି, ସିଂହ ଶିକାର କରନ୍ତି ।"

ଉଆମ୍ବା ଏହା ଶୁଣି ଜଭ କାଢ଼ି ପକାଇଲା । କହିଲା,

"ହଜୁର, ସିଂହ ଶିକାର କରିବାକୁ ମନ ବଳାନ୍ତୁ ନାହିଁ । ସିଂହ ଏ ବାଘ ଭାଲୁଙ୍କ ପରି ନୁହେ । ସେ ପଶୁମାନଙ୍କ ରାଜା; ତାର ବଳ ଯେତିକି, ସାହସ ବି ସେତିକି; ଗର୍ବ ମଧ୍ୟ କମ୍ ନୁହେ । ମୁଁ ନିଜେ ଥରେ ସିଂହ ହାବୁଡ଼ରେ ପଡ଼ିଥିଲି । ଶୁଣନ୍ତୁ ସେ କଥା ଜଣେ ସାହେବ ମୋତେ ପାଖରେ ରଖିଥିଲେ । ତାଙ୍କ ସାଙ୍ଗରେ ବଣକୁ ମୁଁ ଶିକାର କରିବାକୁ ଯାଇଥିଲି ।

ସିଂହ ଜେବ୍ରା ପଶୁକୁ ଖାଇବାକୁ ଖୁବ୍ ଭଲ ପାଏ । ଜେବ୍ରା ଭାରି ତ ଦଉଡ଼ିପାରେ । ସିଂହ ତାକୁ ଠିକ ରହିଥାଏ । ସୁଯୋଗ ପାଇଲେ ତା ଉପରକୁ କୁଦିପଡ଼ି ପିଠିଉପରେ ବସେ । ବେକମୂଳ କାମୁଡ଼ି ମନମଉଜରେ ରକ୍ତ ପିଇବାରେ ଲାଗିଯାଏ । ଜେବ୍ରା ପ୍ରାଣ-ବିକଳରେ ତିନି ଚାରି ମାଇଲ ବାଟ ପବନ ବେଗରେ ଦଉଡ଼ିଯାଏ । ସିଂହ ମନମଉଜରେ 'ଘୋଡ଼ସୱାର' ଥାଏ ଏବଂ ନିଜର ହୋଇ ଭୋକଶୋଷ ମାରୁଥାଏ । ଯେତେବେଳେ ଜେବ୍ରା ଦେହରୁ ଢାରପଣ ରକ୍ତ ଶେଷ ହୋଇଯାଏ; ସେତେବେଳେ ସେ ତଳେ ପଡ଼ିଯାଏ । ମନ ହେଲେ ସିଂହ ତା ମାଂସରୁ କିଛି ଖାଏ, ନ ହେଲେ ଛାଡ଼ି ଚାଲିଯାଏ ।

ସାହେବ ଓ ମୁଁ ବଣଭିତରେ ଯାଉଛୁ, ଦେଖିଲୁ ଗୋଟାଏ ଜେବ୍ରା ଖୁବ୍ ବେଗରେ ଦଉଡ଼ୁଛି । ତା ଗତିବିଧିରୁ ମୁଁ ଜାଣିପାରିଲି ଯେ, ସେ ଜୀବନଭୟରେ ଧାଉଁଛି । ତା ପଛରେ ନିଶ୍ଚୟ ସିଂହ ଗୋଡ଼ାଇଛି ! ସାହେବଙ୍କୁ ହଠାତ୍ ଗଛଉପରେ ଚଢ଼ିପିବାକୁ କହି-ଦେଲି ଓ ମୁଁ ସାଙ୍ଗେସାଙ୍ଗେ ଗୋଟିଏ ଗଛଉପରକୁ ଚଢ଼ିଗଲି । ମାତ୍ର ସାହେବଙ୍କର ତ ଶିକାର କରିବା ଝୁଙ୍କ ଲାଗିଥାଏ । ସେ ସାଙ୍ଗେସାଙ୍ଗେ ଜେବ୍ରାକୁ ଗୁଳି କଲେ । ଜେବ୍ରା ଦେହରେ ଗୁଳି

ବାଜ୍ ନ ବାଜୁଣୁ ଗୋଟାଏ ମସ୍ତବଡ଼ ସିଂହ ବୁଦା ଗଛଳଭିତରୁ ବାହାରିପଡ଼ିଲା । ତାକୁ ଦେଖି ସାହେବଙ୍କ ପିଳେହି ପାଣି । ତାଙ୍କ ହାତରୁ ସେ ଖାଲି ବନ୍ଧୁକ ଖସିପଡ଼ିଲା, ସେତିକି ନୁହେଁ; ସାହେବ ବି ଉପରୁ ଗଛ କାଟିଲା ପରି ତଳେ ପଡ଼ିଗଲେ । ସାଙ୍ଗେସାଙ୍ଗେ ବେହୋସ ।

ସିଂହ ସାହେବଙ୍କ ଉପରକୁ କୁଦିପଡ଼ିଥିଲା; ମାତ୍ର ସାହେବ ଏପରି ପଡ଼ିଯିବାରୁ ବୋଧହୁଏ ତା ମନ ଫିକା ପଡ଼ିଗଲା । ସେ ଥରେ ସାହେବଙ୍କ ସର୍ବାଙ୍ଗ ଶୁଙ୍ଘି ଦେଇଗଲା, ତାପରେ ଟିକିଏ ହୋଇ ସାହେବଙ୍କ ଆଡ଼କୁ କଟମଟ କରି କରି ସମସ୍ତ ଗୁହାଁଳା । ତା ମୁହଁରୁ ଜଣାପଡୁଥିଲା, ସତେ ଯେପରି ସେ କହୁଛି, 'ଛି ! ଏଇ ତ ସାହସ !'

ଖାଲି ସେତିକି ନୁହେଁ । ସିଂହ ତ ସେଠାରୁ ବଣକୁ ଚାଲିଗଲା । ସାହେବ ଗୁଳିରେ ମାରିଥିବା ସେ ଜେବ୍ରାଟାକୁ ବି ଖାଇଲା ନାହିଁ । ଥରେ କେବଳ ତା ଆଡ଼କୁ ଗୁହାଁଦେଇ ବଣଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ସେହି ଦିନଠାରୁ ସେ ସାହେବ ଆଉ କେବେ ସିଂହ ଶିକାର କରିବାକୁ ମନ ବଳାଇ ନ ଥିଲେ ।

ଜିଆଁମ୍ବାଠାରୁ ଏ ଗପ ଶୁଣିଲେ, ତଥାପି ଜୋହାନ୍ସ-ବର୍ଗଙ୍କର ସିଂହ ଶିକାର ନିଶା ଗଲା ନାହିଁ । ସୁବିଧା ପାଇଲେ ସିଂହ ଶିକାର କରିବାକୁ ଯିବେ ବୋଲି ଠିକ୍ ହେଲା ।

ଦିନେ ଜୋହାନ୍ସବର୍ଗ ଖବର ପାଇଲେ ଯେ, ବଣଭିତରେ ଥିବା ଗୋଟାଏ ଗାଁଭିତରକୁ ମଝିରେ ମଝିରେ ସିଂହ ଆସେ । ସେ ଗାଁରୁ ମଇଁଷି, ପଶୁ ପ୍ରଭୃତି ମାରି ଖାଏ । ସାହେବ ଜିଆମ୍ବାକୁ ସାଙ୍ଗରେ ଧରି ବଣରେ ସେହି ଗାଁକୁ ଗଲେ ।

ସାହେବ ଭଲ ବନ୍ଧୁକ ଓ ବହୁତ ଗୁଳି ସାଙ୍ଗରେ ନେଇଥାଆନ୍ତି । ଉଆମ୍ବା ସାହେବଙ୍କୁ ନ ଜଣାଇ ଦୁଇଟା ପାହାଡ଼ ଫଟା ବୋମା ନିଜ ବାକ୍ସ ଭିତରେ ପୂରାଇ ନେଇଯାଇଥାଏ ।

ଗାଆଁଟା ନିବିଡ଼ ବଣଭିତରେ ଗୋଟାଏ ପାହାଡ଼ତଳେ । ଲୋକେ ସାହେବଙ୍କୁ ଦେଖି ବଡ଼ ଖୁସି ହୋଇଗଲେ । ଗାଁଠାରୁ ଖଣ୍ଡିଏ ଦୂରରେ ପାହାଡ଼ମୂଳରେ ସିଂହ ଶିକାର କରିବା ଠିକ୍ ହେଲା । ଗୋଟିଏ ଗଛଉପରେ ମଞ୍ଚା ବାନ୍ଧି ସାହେବ ବସିଲେ । କିଛି ଦୂରରେ ଆଉ ଗୋଟିଏ ଗଛଉପରେ ମଞ୍ଚାରେ ଉଆମ୍ବା ରହିଲା । ସେ ଗାଆଁର କେତେକ ସାହସୀ ଲୋକ ମଧ୍ୟ ଆଖପାଖ ,, ଗଛଉପରେ ବସିରହିଲେ । ତଳେ ଗୋଟ ଏ ବଡ଼ ଷଣ୍ଢ ବନ୍ଧା ହୋଇଥାଏ । ତାକୁ ଖାଇବା ପାଇଁ ସିଂହ ଆସିଲେ, ସାହେବ ଗୁଳି କରିବେ ବୋଲି ଠିକ୍ ହୋଇଥାଏ ।

କ୍ରମେ ରାତି ଦୁଇ ପହର ହେଲା । ବର୍ଷରେ ଏତେ ମଶା ଯେ, ସାହେବ ଥୟ ହୋଇ ବସିପାରୁ ନ ଥାନ୍ତି । ତଥାପି ସ୍ୱରଶବ୍ଦ ନ କରି ସବୁ କଷ୍ଟ ସହି ବସିଥାଆନ୍ତି । ଏକଧ୍ୟାନରେ ଷଣ୍ଢ ବନ୍ଧା ହୋଇଥିବା ଜାଗାକୁ ଚାହିଁ ରହିଥାଆନ୍ତି ।

ବସିବସି ଟିକିଏ ଢୁଲାଇନିଦ ଲାଗିଆସିଛି; ଚଞ୍ଚୁ ଚେଁ ଖାଁ ଶବ୍ଦ ଶୁଣାଗଲା । ସାହେବ ଚମକିପଡ଼ି ଆଖି ଫିଟାଇଲେ । ଚାହିଁ ଦେଖିଲେ, ଗୋଟାଏ ଗଧିଆ ସେ ଷଣ୍ଢ ପାଖରେ ଲୁଣ୍ଠି ହୋଇଛନ୍ତି; ନିଜ ଭିତରେ କଳି ଲଗାଇ କାମୁଡ଼ା କାମୁଡ଼ି ହେଉଛନ୍ତି ।

ସାହେବ ଗୁଳି କରିବେ ବୋଲି ଠିକ୍ କଲେ; ମାତ୍ର ମନରେ ଭାବିଲେ, ବନ୍ଧୁକ ଶବ୍ଦ ଶୁଣିଲେ ସିଂହ ହୁଏତ ଆସିବ ନାହିଁ । ଯଦି ଗୁଳି ନ କରିବେ, ତେବେ ଏତେଗୁଡ଼ାଏ ଗଧିଆ ଦୁଇ

ତିନ ଘଣ୍ଟା ଭିତରେ ଷଣ୍ଢଟାକୁ ମାରି ଖାଇଯିବେ । ଏଠାରେ ଉପାୟ କଅଣ ?

ଏହିପରି ଭାବୁଥାଆନ୍ତି, ଅଳ୍ପ ଦୂରରେ ଗୋଟାଏ ଗର୍ଜନ ଶୁଭିଲା । ଗଧିଆଗୁଡ଼ାକ ସେ ସ୍ଥାନ ଛାଡ଼ିଦେଇ ଏକାଧ୍ୟାନରେ ସେହି ଆଡ଼କୁ ଚାହିଁ ରହିଲେ । ମୁହୂର୍ତ୍ତକ ପରେ କଏ କୁଆଡେ ପଳାଇଗଲେ ।

ସାହେବ ଦେଖିଲେ, ସାଙ୍ଗେସାଙ୍ଗେ ଗୋଟାଏ ମସ୍ତ ବଡ଼ ସିଂହ ଆସି ଷଣ୍ଢ ଉପରକୁ କୁଦି ପଡ଼ିଲା । ମୁହଁରେ ଷଣ୍ଢ ବେକ ମୂଳ କାମୁଡ଼ି ରକ୍ତ ପିଇଲା । ସେତେବେଳେ ତା ବେକର କେଶରସବୁ ଫୁଲି ଉଠିଥାଏ, ଆଖି ଦୁଇଟା ଝଇଁବଣ୍ଣ ପରି ଜଳୁଥାଏ ।

ସାହେବ ଗୁଳି କରିବାକୁ ବନ୍ଧୁକ ଉଠାଉଚନ୍ତି, ଏହି ସମୟରେ ପୁଣି ଗୋଟାଏ ଗର୍ଜନ ଶୁଣାଗଲା । ସାହେବ ଚମକି ପଡ଼ି ବନ୍ଧୁକରୁ ଆଖି ଫେରାଇ ତଳକୁ ଚାହିଁଲେ । ଦେଖିଲେ, ଆଉ ଗୋଟାଏ ସିଂହ ଆସି ହାଜର । ଗ୍ରେଟ ପିଲା ସ୍କୁଲରେ 'ନାଲ୍ ଡ଼ାଉନ୍' ହୋଇ ବସିଲା ପରି ଆଗ ଆସିଥିବା ସିଂହ ପାଖରେ ସେ ବସିରହିଛି ।

ସାହେବ କଅଣ କରିବେ ଭାବୁଛନ୍ତି—ଗର୍ଜନ କରି ପୁଣି ଗୋଟାଏ ସିଂହ ଆସି ପହଞ୍ଚିଗଲା ।

ପ୍ରାୟ ଅଧଘଣ୍ଟାକ ଭିତରେ ତା ପଛକୁ ତା ପଛ ଲାଗି ଦଶଟା ସିଂହ ସେଠାକୁ ଆସିଲେ । ଷଣ୍ଢର ଚାରିପାଖରେ ଘେରି ସମସ୍ତେ ବସିପଡ଼ିଲେ । ସେତେବେଳକୁ ସାହେବଙ୍କ ହାତ ଅଚଳ ହୋଇଗଲାଣି । ଦେହରୁ ଗମ୍‌ଗମ୍ ଝାଳ ନଗିଡ଼ି ପଡ଼ୁଛି ।

ପ୍ରଥମେ ଯେଉଁ 'ବଡ଼ ସିଂହଟା ଆସିଥିଲା, ସେ ଷଣ୍ଢର ମୁଣ୍ଡଟାକୁ ଏକାଥରକେ ଦାନ୍ତରେ ଝୁଣି ଛିଡ଼ାଇ ପକାଇଲା । ତାକୁ କାମୁଡ଼ି ପାଟିରେ ଧରି ବଣଭିତରକୁ ଚାଲିଗଲା । ତା ପରେ ଷଣ୍ଢ

ଦେହରୁ ପୁଳାଏ ମାଂସ ଛିଡ଼ାଇ ଆଉ ଗୋଟାଏ ସିଂହ ସେହିପରି ଚାଲିଗଲା । ଗୋଟିକ ପରେ ଗୋଟିଏ ପାଞ୍ଚୋଟି ସିଂହ ପୁଳାଏ ପୁଳାଏ ମାଂସ ନେଇଗଲେ । ତା ପରେ ଦେଖିଲାବେଳକୁ ଷଣ୍ଢର ଆଉ ଚିହ୍ନ ବର୍ତ୍ତି ନାହିଁ । ସେ ସ୍ଥାନଟା ଖାଲି । କିନ୍ତୁ ପାଞ୍ଚୋଟି ସିଂହ ପୂର୍ବ ପରି ସେଠାରେ ବସିଛନ୍ତି ।

ସାହେବ ଆଖି ବୁଲାଇ ବୁଲାଇ ଦେଖିଲେ, ଗୋଟାଏ ସିଂହ ଏକଧ୍ୟାନରେ ଗଛଉପରକୁ ଚାହିଁରହିଛି । ବୋଧହୁଏ ବାସନା ବାରି ସେ କେତେବେଳୁ ଉପରକୁ ଚାହିଁ ସାହେବଙ୍କୁ ଦେଖିସାରିଲାଣି । ସାହେବଙ୍କ ଆଖି ତା ଆଖିଉପରେ ପଡ଼ିବାକ୍ଷଣି ସାହେବଙ୍କ ଦେହର ରକ୍ତ ବରଫ ପରି ଥଣ୍ଡା ହୋଇଗଲା । ସର୍ବାଙ୍ଗ ଥରଥର କମ୍ପିବାକୁ ଲାଗିଲା । ସାହେବ ଆଖି ବୁଜିଦେଇ ପାରିଲେ ନାହିଁ କି ସିଂହଠାରୁ ଆଖି ଫେରାଇ ନେଇପାରିଲେ ନାହିଁ । ତାଙ୍କୁ ବୋଧହେଲା—ତଳେ ବସିଥିବା ପାଞ୍ଚଟାଯାକ ସିଂହ ଯେପରି କି ଏକାବେଳକେ ତାଙ୍କୁ ଚାହିଁ ରହିଛନ୍ତି । ଉଃ, କି ଭୀଷଣ ! ସେ ଆଖିର ଜ୍ୟୋତି କି ଭୟଙ୍କର !

ଗୋଟାଏ ସିଂହ ତଳୁ ଗଛ ଉପରକୁ ଖୁବ୍ ଜୋରରେ କୁଦାମାରିଲା । ଠିକ୍ ସେହି ସମୟରେ ବଣ ଭୂଇଁ ଫଟାଇ, ଆକାଶ କମ୍ପାଇ ଗୋଟାଏ ଅତି ପ୍ରବଳ ଗର୍ଜନ ହେଲା । ସାହେବ ଅଜ୍ଞାନ ହୋଇ ତଳେ ପଡ଼ିଗଲେ । ଚାହୁଁ ଚାହୁଁ ସିଂହଗୁଡ଼ାକ ବଣଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲେ ।

ଜଆମ୍ବା ନଜ ମଞ୍ଚାରୁ ଓହ୍ଲାଇ ଆସି ସାହେବଙ୍କ ମୁହଁରେ ପାଣି ଛିଟିଲା । ବହୁ ସେବାଶୁଶ୍ରୂଷା ପରେ ସାହେବଙ୍କର ଚେତନା ଆସିଲା । ଗାଆଁର ଲୋକେ ମଧ୍ୟ ଆସି ସେଠାରେ ପହଞ୍ଚିଗଲେ ।

ପ୍ରଥମେ ତ ମାହେବ କଣ୍ଟୁ ବୁଝିପାରିଲେ ନାହିଁ । ତା ପରେ ସୂକ୍ଷ୍ମ ଜ୍ଞାନ ଫେରି ଆସିବାରୁ ଉଆମ୍ବାକୁ ପଚାରିଲେ, "ସିଂହ ମୁହଁରୁ ମୋତେ କପରି ବଞ୍ଚାଇଲୁ ?"

ଉଆମ୍ବା ଉତ୍ତର ଦେଲା "ମୁଁ ସାଙ୍ଗରେ ଦୁଇଟା ବଡ଼ ବୋମା ଆଣି ପାଖରେ ରଖିଥିଲି । ଯେତେବେଳେ ଦେଖିଲି, ଅବସ୍ଥା ଅତ୍ୟନ୍ତ ସାଙ୍ଘାତିକ, ସେତେବେଳେ ସେଇ ବୋମା ଦୁଇଟାକୁ ଏକାବେଳକେ ତାଙ୍କୁ ଫିଙ୍ଗିଦେଲି । ତାହା ଫୁଟିବାରୁ ଏ ବଣଜଙ୍ଗଲ କମ୍ପିଗଲା । ସିଂହଗୁଡ଼ାକ ଆଖିପିଛୁଳାକେ ପଳାଇଗଲେ ।"

ଜୋହାନ୍ସବର୍ଗ ଆନନ୍ଦରେ ଉଆମ୍ବାକୁ କୁଣ୍ଢାଇ ପକାଇଲେ ।

— ୭ —

ଆମ ଭାରତବର୍ଷର କାଥିଆବାଡ଼ ଜଙ୍ଗଲରେ ଯେଉଁ ସିଂହ ଅଛନ୍ତି, ସେମାନେ ପୃଥିବୀର ସବୁ ସିଂହଙ୍କଠାରୁ ଦେଖିବାକୁ ସୁନ୍ଦର ଓ ଭାରି ବଳୁଆ । ସେହି ଦେଶର ଗୋଟିଏ ସିଂହ ଲାଗି ଜଣେ ଲୋକ ନିଜ ଭାଗ୍ୟ ବଦଳାଇ ଦେଇ ପାରିଥିଲା ।

ମୋଗଲ ରାଜତ୍ୱ ସମୟରେ ସେ ଦେଶ ସ୍ୱାଧୀନ ଥିଲା । ମୋଗଲସମ୍ରାଟ ସେ ରାଜ୍ୟ ଦଖଲ କରିବାକୁ ସୈନ୍ୟ ପଠାଇଲେ । ରାଜା ନିଜେ ସେନାପତି ହୋଇ ନିଜ ସୈନ୍ୟ ପରିଚାଳନା କଲେ ।

ସେହି ସୈନ୍ୟମାନଙ୍କ ଭିତରେ ଦୁଲୀପ ରାୟ ବୋଲି ଜଣେ ସୈନ୍ୟ ଥିଲେ । ଅନ୍ୟ ସୈନ୍ୟଙ୍କ ଅପେକ୍ଷା ସେ ଟିକିଏ ଅଳସୁଆ ।

ଥରେ ସୈନ୍ୟବାହିନୀ ଯୁଦ୍ଧକ୍ଷେତ୍ରକୁ ଗଲାବେଳେ ବାଟରେ ବଣରେ ଅଳ୍ପ ସମୟ ପାଇଁ ବିଶ୍ରାମ ନେଇଥିଲେ । ସେତିକିବେଳେ 'ଦୁର୍ଲାଭ ରାୟ' ଗାଢ଼ ନିଦରେ ଶୋଇପଡ଼ିଲେ । ଉଠି ଦେଖନ୍ତି ତ, ସୈନ୍ୟବାହିନୀ ସେ ସ୍ଥାନ ଛାଡ଼ି ଚାଲିଗଲେଣି । ତାଙ୍କ ନିଜର ଘୋଡ଼ାଟି ମଧ୍ୟ ନାହିଁ—କିଏ କୁଆଡ଼େ ପଳାଇ ଯାଇଛି ।

ଏହି ଦୋଷ ପାଇଁ ତାଙ୍କୁ ମୃତ୍ୟୁଦଣ୍ଡ ମିଳିବାର କଥା । ମୃତ୍ୟୁଦଣ୍ଡ ଆଶଙ୍କାରେ ସେ ଆଉ ଯୁଦ୍ଧକ୍ଷେତ୍ରକୁ ଗଲେ ନାହିଁ । ଘୋଡ଼ା ନାହିଁ, କିପରି ବା ଯିବେ ? ଏଣେ ବାହାରେ ବୁଲୁ ବୁଲୁ ଧରାପଡ଼ିଲେ ରାଜାଙ୍କ ଲୋକେ ଧରି ନେଇଯିବେ । ତେଣୁ ସେ ଭାବି ଠିକ୍ କଲେ ଯେ, ସେ 'ବାବାଜୀ' ହୋଇଯିବେ; ଗୀର୍ଣ୍ଣାର ପାହାଡ଼ ଗୁମ୍ଫାରେ ବସି ତପସ୍ୟା କରିବେ ।

ସେତେବେଳେ ସୈନ୍ୟମାନଙ୍କ ପାଖରେ ଗୋଟାଏ ଲମ୍ବଦଣ୍ଡା ରହୁଥାଏ । ସେହି ଦଉଡ଼ିର ଗୋଟାଏ ମୁଣ୍ଡରେ ଫାଶ ଥାଏ । ଶତ୍ରୁ କିମ୍ବା ବଣର କୌଣସି ପଶୁକୁ ଆୟତ୍ତ କରିବାକୁ ହେଲେ, ଦୂରରୁ ସେ ଦଉଡ଼ା ବୁଲାଇ ବୁଲାଇ ଫିଙ୍ଗି ଦେବାକୁ ହୁଏ । ଯାହାକୁ ଲକ୍ଷ୍ୟ କରି ଦଉଡ଼ା ପକାଯାଏ, ତା ବେକରେ ବା ଦେହର କୌଣସି ଅଙ୍ଗରେ ଫାଶଟା ଗଳିଗଲେ, ପକାଇବା ବ୍ୟକ୍ତି ଦଉଡ଼ା ଟାଣିଦିଏ । ଫାଶ ବାନ୍ଧି ହୋଇଗଲେ ସେ କାବୁ ହୋଇପଡ଼େ ।

ସେହି ଦଉଡ଼ାଟି ମାତ୍ର ସମ୍ବଳ କରି ଦୁର୍ଲାଭ ରାୟ ବଣ ଭିତରକୁ ପଶିଲେ । ତାଙ୍କର ଲକ୍ଷ୍ୟ, କିପରି ଗୀର୍ଣ୍ଣାର ପାହାଡ଼କୁ ଯିବେ । ସେଠାରେ ତପସ୍ୟା କରିବା ବାହାନାରେ ଲୁଚି ରହିବେ ।

ସନ୍ଧ୍ୟାବେଳକୁ ସେ ପାହାଡ଼ତଳେ ପହଞ୍ଚି ପାଇଥିଲେ । ଅନ୍ଧାରରେ ଆଉ କୁଆଡ଼େ ଯିବା ନିରାପଦ ନୁହେଁ ଭାବି ସେଇଠାରେ ଗୋଟିଏ ବଡ଼ ଝଙ୍କାଳିଆ ଗଛଉପରେ ଚଢ଼ି ବସି ରହିଲେ ।

ରାତି ଅଧ ସରିକି ତଳେ ଖସ୍‌ଖସ୍ ଶବ୍ଦ ଶୁଣାଗଲା । ସେ ଚାହିଁ ଦେଖିଲେ ଯେ, ଗୋଟାଏ ମସ୍ତବଡ଼ ସିଂହ ତାଙ୍କ ଘୋଡ଼ାଟାକୁ ବେକରୁ କାମୁଡ଼ି ଧରି ଖୁବ୍ ଜୋରରେ ଧାଇଁଛି— ବିଲେଇ ମୂଷାଟାଏ ମୁହଁରେ କାମୁଡ଼ି ଧରି ଯେପରି ଦଉଡ଼େ । କେବଳ ସେତିକି ନୁହେଁ, ତା ପଛେପଛେ ଆଉ ଗୋଟାଏ ସିଂହ ବି ରହିଛି ।

ଦୁଲୀପ ରାୟ ବସିଥିବା ଗଛତଳେ ସିଂହ ଘୋଡ଼ାଟାକୁ ରଖିଲା । ଦୁହେଁଯାକ ମନମଉଜରେ ତାକୁ ଖାଇବାକୁ ଲାଗିଗଲେ ।

ଦୁଲୀପଙ୍କୁ ହଠାତ୍ ଗୋଟାଏ ବୁଦ୍ଧି ଦେଖାଦେଲା । ସେ ଗଛ ଡାଳରେ ନିଜ ଦେହକୁ ଖୁବ୍ ଯୋରରେ ବାନ୍ଧିଦେଲେ । ତା ପରେ ଦଉଡ଼ା ଫାଶକୁ ଏପରି ବୁଲାଇ ପକାଇଦେଲେ ଯେ, ଫାଶଟା ବଡ଼ ସିଂହ ବେକରେ ଗଳିଗଲା । ଉପରୁ ଟଣା ଯିବାରୁ ସାଙ୍ଗେସାଙ୍ଗେ ଫାଶଟା ଯାକି ହୋଇଗଲା । ସିଂହ ଅଣନିଃଶ୍ୱାସୀ ହୋଇ ଗର୍ଜନ ଛାଡ଼ିଲା ଓ ଛାଟିପିଟି ହେଲା । ଅନ୍ୟ ସିଂହଟା ସାଙ୍ଗର ହଠାତ୍ ଏପରି ଅବସ୍ଥା ଦେଖି ଥକା ହୋଇଗଲା । ସେ ଆଉ ଖାଇବ କଣ ?

ବନ୍ଧନରେ ପଡ଼ିଥିବା ସିଂହଟା ମଧ୍ୟ ପ୍ରାଣବିକଳରେ ତାକୁ ଦୁଇ ଚାରି କାମୁଡ଼ା ଦେଲା ଓ ଆଗ ଗୋଡ଼ ପଞ୍ଝାରେ କେତୁଟା ପାହାର ବସାଇ ଦେଲା । ସେ ସିଂହ ମନରେ କଅଣ ଭାବି ସେଠାରୁ ଯୋରରେ

ଡେଉଡ଼ି ଚଳାଇଗଲା । ବଡ଼ ସିଂହଟା ବହୁ ସମୟ ଦାଉରେଇ କବୃଡ଼ି ହୋଇ ଆଲଜା ଦେଇ ସେହିଠାରେ ପଡ଼ିରହିଲା ।

ରାତି ପାହିଲା, ଦୁଲୀପ ଗଛରୁ ଓହ୍ଲାଇ ପାଖ ଗାଁ ଭିତରକୁ ଗଲେ । ସେଠାରୁ କେତେକ ଲୋକଙ୍କୁ ଡାକଆଣି ସିଂହର ଚାରି ଗୋଡ଼ ଭଲ ରୂପେ ବାନ୍ଧି ପକାଇଲେ । ଗାଡ଼ିରେ ଲଦି ରାଜ-ଦରବାରକୁ ଆଣିଲେ ।

ରାଜା ସିଂହର ଏ ଦଶା ଦେଖି ଜାଣିଲେ ଯେ, ଦୁଲୀପଙ୍କର ସାହସ ଯେପରି, ବଳ ବୁଦ୍ଧି ସେହିପରି ଖୁବ୍ ବେଶି । ତାଙ୍କୁ ଆଉ ପ୍ରାଣଦଣ୍ଡ ଦେବେ କଅଣ; ସୈନ୍ୟର ବଡ଼ ପାହ୍ୟାରେ ରଖାଇ ଦେଲେ । ତାଙ୍କର "ରାୟ" ପଦବୀ ବଦଳାଇ "ସିଂହ" ଉପାଧି ଦେଲେ—କାରଣ ସେ ସିଂହକୁ କାବୁ କରି ପକାଇଛନ୍ତି ।

—୭—

ଡାକ୍ତର ଲିଭିଂଷ୍ଟୋନ ସାହେବ ନିଜ ଜୀବନଟା ଯାକ ଦକ୍ଷିଣ ଆଫ୍ରିକା ଜଙ୍ଗଲରେ କଟାଇଥିଲେ । ଜଙ୍ଗଲଭିତରେ କେଉଁଠି କଅଣ ଅଛି, ସେଠା ମଣିଷ କିପରି, ପଶୁପକ୍ଷୀ କେତେ ରକମର ଅଛନ୍ତି—ଏହି ବିଷୟସବୁ ଜାଣିବାକୁ ସେ ବଣର ଅନ୍ଦିକନ୍ଦି ବୁଲୁଥିଲେ । ତାଙ୍କ ସଙ୍ଗରେ ସେହି ବଣର ଗୁଡ଼ିଏ ଲୋକର ସବୁବେଳେ ରହୁଥାନ୍ତି ।

ସାହେବ ଥରେ ବଣଭିତରେ ଗୋଟିଏ ପାହାଡ଼ ଉପରେ ଚଢ଼ୁଥିଲେ—ପଛକୁ ଚାହିଁ ଦେଖିଲେ ଯେ, ଗୋଟାଏ ମସ୍ତବଡ଼ ସିଂହ ତାଙ୍କୁ ଲକ୍ଷ୍ୟ କରି ଦଉଡ଼ୁଛି । ଆଉ କୁଆଡ଼େ ପଳାଇ ଯିବାର ଉପାୟ ନାହିଁ । ହାତରେ ଯେଉଁ ବନ୍ଧୁକ ଅଛି, ତାହା ଅତି ସାନ—ଠଡ଼େଇ ମାରିବା ବ୍ୟତୀତ ସେଥିରେ ଆଉ କିଛି ହେବ ନାହିଁ । ସିଂହ ଆସି ଅଳ୍ପ ଦୂରରେ ହୋଇଗଲାଣି ।

ସେ ସ୍ଥିର ଜାଣିଗଲେ ଯେ, ଏଇ ମୁହୂର୍ତ୍ତରେ ହିଁ ସିଂହ ସେଠି ତାଙ୍କ ଘାଡ଼ ହେବ ।

ସାହେବ ଆଗକୁ ଚାହିଁ ଦେଖିଲେ; ପାହାଡ଼ ଦେହରେ ଗୋଟାଏ ବଡ଼ ଖାଲ ଅଛି । ଖାଲଟା ଏଡ଼େ ଗମ୍ଭୀର ଯେ, ତାର ତଳ ଦେଖାଯାଉ ନାହିଁ । ସେ ସେଇଠାରେ ଗୋଟାଏ ବୁଦ୍ଧି କଲେ । ନିଜ ଦେହରୁ ଜାମା ଓ ମୁଣ୍ଡରୁ ଟୋପିଟି କାଢ଼ି ପକାଇଲେ । ବନ୍ଧୁକ ଦେହରେ ଜାମା ଓ ଅଗରେ ଟୋପିଟି ପିନ୍ଧାଇ ଦେଇ ତାକୁ ଦୁଇ ହାତରେ ଉପରକୁ ଟେକି ଧଇଲେ । ସେ ନିଜେ ସେଠାରେ ମୁହଁମାଡ଼ି ଶୋଇପଡ଼ିଲେ ।

ସିଂହ ସେ ଟୋପି ଓ ଜାମାକୁ ଦେଖି ମଣିଷ ବୋଲି ଭାବିଲା । ତାକୁ ଲକ୍ଷ୍ୟକରି ଖଣ୍ଡିଏ ଦୂରରୁ ଖୁବ୍ ଜୋରରେ କୁଦା ମାରିଲା । ସେହି କୁଦାରେ ଆଖିର ପଲକ ମାତ୍ରକେ ବନ୍ଧୁକ ସହ ସେ ଯାଇ ଆଗରେ ଥିବା ଖାଲଭିତରେ ପଡ଼ିଗଲା । ଗୋଟାଏ ଭୀଷଣ ଜନ୍ତୁ ଉଡ଼ିବାଭଳି ଯାହା ଶବ୍ଦ ହେଲା, ସେତିକି—ସିଂହର ଆଉ ପତ୍ତା ମିଳିଲା ନାହିଁ ।

ସାହେବ ଉଠି ନିଜ ତମ୍ବୁକୁ ଫେରିଆସିଲେ ।

—୮—

ଧ୍ରୁମ ସିଂହ ବଗୁଲଦାର । ସୈନ୍ୟଫଉଜରେ ରହି ବଗୁଲ ବଜାଇବା ତାର କାମ ।

ଥରେ ସୈନ୍ୟଫଉଜଙ୍କ ତମ୍ବୁ ଗୋଟାଏ ବଣ ପାଖରେ ପଡ଼ିଲା । ସୈନ୍ୟମାନେ ଖାଇପିଇ ତମ୍ବୁଭିତରେ ଖେଳିବେ ଲାଗିଗଲେ । ଧ୍ରୁମ ସିଂହ ତାଙ୍କ ସଙ୍ଗରେ ନ ରହି ଏକାକୀ ବଣ-ଭିତରକୁ ଚାଲିଗଲା । ଗୋଟିଏ ସୁବିଧା ଜାଗାରେ ବସି ମନଇଚ୍ଛା ମଦ ପିଇଲା । ଶେଷକୁ ତାର ଆଉ ଚେତା ରହିଲା ନାହିଁ ।

ସେହି ସମୟରେ ଗୋଟାଏ ବଡ଼ ସିଂହ ଆସି ସେଠାରେ ପହଞ୍ଚିଲା । ସେ ଶିକାର ଖୋଜି ବାହାରିଥିଲା । ବେଶି ବାଟ ଯିବାକୁ ପଡ଼ିଲା ନାହିଁ କି କିଛି ପରିଶ୍ରମ କରିବାକୁ ହେଲା ନାହିଁ । ସିଂହ ଦେଖିଲା, ତା ଆଗରେ ଗୋଟିଏ ବେଶ ମୋଟାସୋଟା ଆହାର । ସିଂହର ଫୁର୍ତ୍ତି ଆଉ ଦେଖେ କିଏ ?

ଖ୍ୱାମ ସିଂହ ମଦନିଶାରେ ସେଠାରେ ପଡ଼ି ଉହୁ ଢୁଳାଉଥିଲା । ସିଂହ ତା ପିଠିରୁ କାମୁଡ଼ି ଧରି ନିଜ ଘରକୁ ଚାଲିଲା । ସିଂହ ଦାନ୍ତ ପିଠରେ ଫୁଟିଯିବାରୁ ଖ୍ୱାମସିଂହର ନିଶା ଛାଡ଼ିଗଲା । ତାର ସୁଖସ୍ୱପ୍ନ ଭାଙ୍ଗିଗଲା । ସେ ବୁଝିପାରିଲା, ସିଂହ ତାକୁ କାମୁଡ଼ି ଧରି ବଣଭିତରକୁ ଘୋସାରି ନେଉଛି ।

ପୋଷାକରେ ଝିଣ୍ଟେ ହେଲେ ଛୁଇଁ ନାହିଁ । ତା ମନେ ପଡ଼ିଗଲା, ବଗୁଲଟା ଅଣ୍ଟାରେ ବନ୍ଧା ହୋଇଛି । ସେ ଆସ୍ତେ ହାତରେ ବଗୁଲଟି ଧରି ମୁହଁରେ ଲଗାଇ ଫୁଙ୍କିଲା—ଭୁଁ ପୁଁ, ଭୁଁ ପୁଁ, ଭୁଁ ପୁଁ ।

ସିଂହ ଚମକିପଡ଼ି ପାଟିରୁ ଶିକାରକୁ ଛାଡ଼ିଦେଲା । ଏ ପୁଣି କଅଣରେ ବାବା ! ଖ୍ୱାମସିଂହ ଦେଖିଲା, ବଗୁଲ ଫୁଙ୍କା ବେଶ କାମ ଦେଉଛି । ତେଣୁ ସେ ଖୁବ୍ ଜୋରରେ ତାହା ଫୁଙ୍କିବାରେ ଲାଗିଗଲା । ସିଂହ ସେଥିରେ ଛାନିଆ ।

ସିଂହ ମୁହୂର୍ତ୍ତେ ତା ଆଡ଼କୁ ଚାହିଁ ଠିଆ ହେଲା । ତା ପରେ କଅଣ ଭାବି—ଦେ ଦଉଡ଼ । ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ବଗୁଲ ଶବ୍ଦ ଶୁଣି ତମ୍ବୁରୁ ସୈନ୍ୟମାନେ ସେଠାକୁ ଦଉଡ଼ିଆସିଲେ । ଖ୍ୱାମସିଂହର ଅବସ୍ଥା ଦେଖି ଆଉ ତାଠାରୁ ସିଂହ କଥା ଶୁଣି ଖୁବ୍ ଜୋରରେ ହସିଉଠିଲେ । ତାକୁ ଧରାଧରି କରି ତମ୍ବୁକୁ ଆଣିଲେ

— —